# ବିଜ୍ଞାନ ସୁରଭି

ଲେଖକ—

**ଅଧ୍ୟାପକ ରାଧାମୋହନ ମହାପାତ୍ର**

ବାଙ୍କୀ କଲେଜ, ବାଙ୍କୀ

ପ୍ରକାଶକ—

**ଅମୃତ ପ୍ରକାଶନୀ**

ମାର୍ଫତ ଶ୍ରୀମତୀ ସସ୍ମିତା ପାତ୍ର

ବକ୍ସି ବଜାର, କଟକ

ପ୍ରକାଶକାଳ —

ଡିସେମ୍ବର ୧୯୯୦

ମୁଦ୍ରଣ—

ଭାଳଆ ପ୍ରିଣ୍ଟର୍ସ

ଗଙ୍ଗାମଢର, କଟକ

ମୂଲ୍ୟ—**ପଚାଶଟଙ୍କା ମାତ୍ର**

## ସୂଚୀପତ୍ର





# ଉତ୍ସର୍ଗ

ଛୋଟ ଛୋଟ ପିଲାମାନଙ୍କ ହାତରେ—

ଲେଖକ



# ଆମ ତରଫରୁ—

ବିଜ୍ଞାନକୁ ଲୋକପ୍ରିୟ କରିବାପାଇଁ ସରକାର ବହୁ ପଦକ୍ଷେପ ନେଇଛନ୍ତି । ମଣିଷ ଆଜି ଏପରି ଏକ ସମୟରେ ଆସି ପହଞ୍ଚିଛି ଯେଉଁଠାରେ—ଦୃଷ୍ଟି ଦେଲେ ବିଜ୍ଞାନର ଚମତ୍କାରିତା ହିଁ ଆଖିରେ ପଡ଼େ । ଛୋଟ ଛୋଟ ପିଲାମାନଙ୍କୁ ବିଜ୍ଞାନର ଅଗ୍ରଗତି ତଥା ଏଥିପ୍ରତି ଆଗ୍ରହ ସୃଷ୍ଟି ପାଇଁ—ଖୁବ୍ ସରଳ ଭାବେ ଲେଖା ଆମର ଏହି ବହି **"ବିଜ୍ଞାନ ସୁରଭି"** । ପିଲାଙ୍କ ଠାରୁ ବଡ଼ ଯାଏଁ ସମସ୍ତଙ୍କୁ ଏହା ଆନନ୍ଦ ତଥା ଶିକ୍ଷା ଦେବ ବୋଲି ଆମର ବିଶ୍ୱାସ ।

**ଅମୃତ ପ୍ରକାଶନୀ**

# ମାମୁଁଙ୍କୁ ଚୋର ନେଇଗଲା

ଅନ୍ଧକାର ଓ ଆଶା ଦେଉଦେଉ ଜୁହି ମାମୁଁ ଘରେ ମଣ୍ଡଳରେ କଟେଇ ଦରକୁ ଫେରୁଥାଆନ୍ତି । ସ୍କୁଲ ଛୋଟିବା ବେଳ ହୋଇ ଆସୁଥାଏ । କନ୍ତୁ ରାତି ପାହିଲେ କୁଆଁର ପୁନେଇ, କେତେ ଉଳକ ଉଳ ମିଠା ଖାଇବୁ ନୂଆ ପୋଷାକ ଓ ମଲ୍ଲୀଫୁଲିଆ ଜହ୍ନ ଆଲୁଅରେ ଖେଳ ଆଖି ଆଗରେ ନାଚ ଯାଉଥାଏ । ରାତି ସାରା ନିଦ ନାହିଁ, କେମିତି ପୁନେଇ ରାତି ଆସିବ, ରାତି ପାହି ଦିନ ହେଲା, ପୁଣି ସଞ୍ଜ ଆସିଲା, ପିଲାମାନେ ଜହ୍ନମାମୁଁଙ୍କୁ ଅପେକ୍ଷା କରିଥାଆନ୍ତି, ହେଲେ, ମାମୁଁଙ୍କର ଦେଖାନାହିଁ, ସଞ୍ଜ ହୋଇଯାଇ ଅନ୍ଧାର ମାଡ଼ି ଆସିଲା । ଆରେ—ଇଏ କଣ ? ଆଜ କୁଆଁର ପୁନେଇ—ଜହ୍ନମାମୁଁ ଗଲେ କୁଆଡ଼େ । ସବୁ ମଜା, ସବୁ ଆନନ୍ଦ ପାଣି ରେ ମିଳେଇଗଲେ ସେମାନେ ମନଦୁଃଖରେ ବୁଢ଼ିମାଆଙ୍କ ପାଖକୁ ଦଉଡ଼ିଲେ । "ମାଆ—ମାଆ, ଆଜି ପରା କୁଆଁର ପୁନେଇ, ଜହ୍ନମାମୁଁ ଗଲେ କୁଆଡ଼େ ?" ମାଆ କହିଲେ "ଆଜି ଜହ୍ନମାମୁଁ ଆସିଲେ ନାହିଁ । ତାଙ୍କୁ ବନ୍ଧୁ ବୋଲି ଗୋଟିଏ ଦୁଷ୍ଟ ଅସୁର ଘେରାଇ ନେଇଛି । ସେ ଜହ୍ନମାମୁଁଙ୍କୁ ତା ଗୁମ୍ଫା ଭିତରେ ଲୁଚାଇ ରଖିଛି । ସେଠୁଁ ମୁକୁଳିଲେ ତ ଆସିବେ ? ବେଳେ ବେଳେ ଏଇମିତି ପୁନେଇ ଦିନରେ ଅସୁର ରାତିସାରା ମାମୁଁଙ୍କୁ ନେଇଯାଏ । ରାହୁ ଗୋଟେ କେତୁ ଅସୁର ମଧ୍ୟ ସୂର୍ଯ୍ୟ ଦେବତାଙ୍କୁ ଏଇମିତି ଘେରାଇ ନିଏ । ପୁଣି ଦିନ ଆଲୁଅରେ, ଚନ୍ଦ୍ର, ସୂର୍ଯ୍ୟ ଦୁଇ ଭାଇଙ୍କୁ ଆମେ ଏପରି ଅଭିଶାପ ଅଛି, ସେ ବହୁତ ଦିନ ପୁରୁଣା କଥା, ତୁମେ ବୁଝି ପାରିବନି ?"

ଏମାନେ ତ ହେଲେ ଅଳକାଲ ବଳନ ପୁରେ ଚୁଆ । ଯେଉଁଠି ମନୁଷ୍ୟ ରକେଟ୍‌ରେ ବଶ୍ଵ ବ୍ରହ୍ମାଣ୍ଡ ବୁଲ ଆସୁଛନ୍ତି । ଯନ୍ତ୍ର ଲଗାଇ ସବୁ କାମ ଆଖି ପିଛୁଳାକେ କର ପକାଉଛନ୍ତି । ଏ ପୁରାଣରେ ଅସୁର କଥା ତାଙ୍କ ମୁଣ୍ଡରେ ପଶୁଛି କେମିତି, ମନ ଦୁଃଖରେ ଦଉଡ଼ିଲେ ବାପାଙ୍କ ପାଖକୁ । କାନ୍ଦ କାନ୍ଦ ହୋଇ ନିଜର ଦୁଃଖ ଜଣାଇଲେ । ସବୁ ଶୁଣି ବାପା ଠୋ ଠୋ ହୋଇ ହସି କହିଲେ, ଆରେ, ତୁମେ ଏଇଟା କେତେ ଜାଣିଲ । କରର ଅସୁର କାହିଁକି ଜହ୍ନମାମୁଁଙ୍କୁ ଗ୍ରେସିବ ନେବ । ଏସବୁ ପରି ତୁମର ବଜ୍ଞାନ ପାଠ । ଆଜ ଚନ୍ଦ୍ର ଗ୍ରହଣ, ଶୁଣ—ମୁଁ ତୁମକୁ ସବୁ ବୁଝାଇ ଦେଉଛି ”।

ଆମେମାନେ ଯେଉଁଠାରେ ବାସ କରି ରହୁଥିବା ଯାଗାର ନାମ ପୃଥିବୀ । ତାକୁ ଆମେ ମାଆ ବୋଲି କହୁଥାଉ । ଆମର ପୃଥିବୀ ପରି ଆହୁରି ଅନେକ ବଡ଼ ବଡ଼ ଜନଷ ଅଛନ୍ତି । ସେମାନେ ହେଲେ ଗ୍ରହ, ସୂର୍ଯ୍ୟ ତାର ପ୍ରଭୃତି । ସୂର୍ଯ୍ୟ ଦିନବେଳେ ଓ ଚନ୍ଦ୍ର ରାତିରେ ପୃଥିବୀକୁ ଆଲୁଅ ଦେଇଥାଆନ୍ତି । ତେଣୁ ସେ ଦୁହିଁଙ୍କୁ ଆମେ ଖୁବ୍ ଭଲପାଉ । ଚନ୍ଦ୍ର କିରଣ ଖୁବ୍ ଚୋପା ଓ ଥଣ୍ଡା । ସେଥିରେ ଖେଳିବା, ବୁଲିବାକୁ ମଜା ଲାଗେ । ଆହୁରି ମଧ୍ୟ ଚନ୍ଦ୍ରର ଆକାର ପୃଥିବୀ ଆକାରର ପ୍ରାୟ ପଞ୍ଚାଶ ଭାଗରୁ ଏକ ଭାଗ । କହିଲ ଦେଖି—ତୁମେ ସବୁଠୁଁ କାହାକୁ ବେଶୀ ଭଲପାଅ । ତୁମ ସାନ ମାମୁଁଙ୍କୁ ନିଶ୍ଚୟ । ସେହିଭଳି ସମସ୍ତ ପୃଥିବୀରେ ଥିବା ଲୋକଙ୍କ ପାଇଁ ଚନ୍ଦ୍ର ହେଲେ ଆଦରର ମାମୁଁ । ସୂର୍ଯ୍ୟ, ଚନ୍ଦ୍ରକୁ ବାଦ ଦେଲେ ଆକାଶରେ ଆହୁରି ଅନେକ ପଦାର୍ଥ ଅଛନ୍ତି ଯେଉଁମାନେ ଆମକୁ ଆଲୁଅ ଦେଇଥାଆନ୍ତି, ମଳ୍ଲୀଫୁଲ ପରି ଟିକି ଟିକି ତାରା ମାଉସୀ ମାନେ ଏହିପରି ପଦାର୍ଥ, ଅନେକ ଦୂରରେ ଥିବାରୁ ଏତେ ଟିକି ଟିକି ଦିଶନ୍ତି । ଏବେ କହିପାରିବ କି—କାହିଁକି ସୂର୍ଯ୍ୟଙ୍କ ଆଲୁଅରେ ଆମେ ଗରମରେ ସିଝିଯାଉ, କିନ୍ତୁ ଚନ୍ଦ୍ର ଆଲୁଅ ଏତେ ଥଣ୍ଡା ଲାଗେ । ସୂର୍ଯ୍ୟଙ୍କଠାରୁ ଆଲୁଅ ସିଧାସଳଖ (ପ୍ରତ୍ୟକ୍ଷ) ପୃଥିବୀକୁ ଆସୁଥିବାରୁ ଖୁବ୍ ଗରମ ଜଣାପଡ଼େ, କିନ୍ତୁ ଚନ୍ଦ୍ରଙ୍କର ନିଜର ଆଲୁଅ ନାହିଁ । ସେ

ସୂର୍ଯ୍ୟଙ୍କଠାରୁ ଅଲୁଅ ଧାର ଆଣି ପୃଥିବୀକୁ ଦିଅନ୍ତି । ତେଣୁ ଏହା ଚନ୍ଦ୍ରଙ୍କ ଆଲୋକ ଓ ଖୁବ୍ ଆରାମ ଦାୟକ । ଗୋଟିଏ ଖୁବ୍ ସହଜ ବାଟରେ ଆମେ ଏହା ନିଜେ ପରୀକ୍ଷା କରିବା ।



ଚିତ୍ର ୧ (କ)




ଚିତ୍ର ୧ (ଖ)

ମହମବତୀଟିଏ ଜାଳ, ତା'ହାର ଶିଖା ଉପରେ ହାତକୁ ଦେଖାଇଲେ କପରି ଲାଗିବ ? ନିଶ୍ଚୟ ହାତ ତାତି ଯାଉଛି । କାରଣ ଏହା ପ୍ରତ୍ୟକ୍ଷ ଆଲୋକ ହୋଇଥିବାରୁ ଗରମ । କିନ୍ତୁ ଜଳନ୍ତା ମହମବତୀ ଆଗରେ ଦର୍ପଣଟିଏ ଦେଖାଇଲେ ଆମେ ମଧ୍ୟ ଆଲୁଅ ପାଉଛେ, କିନ୍ତୁ ଏହା ହାତକୁ ଗରମ ଲାଗୁନାହିଁ । ଏହା ପରୋକ୍ଷ ଆଲୋକ ହୋଇଥିବାରୁ ଥଣ୍ଡା ।

ସୂର୍ଯ୍ୟ, ଚନ୍ଦ୍ର, ତାରା ପ୍ରଭୃତି ଆଲୋକ ଦେଉଥିବା ବସ୍ତୁ ଜ୍ୟୋତିଷ୍କ ବୋଲି କହୁଥାଉ ।

ଦିଁ—ଆଜ କାର୍ତ୍ତିକ ଚନ୍ଦ୍ର ଦଶୁନ:ହାନ୍ତି ସେ ବଟପୁରେ ଜାଣିବା, ଆଜ ଚନ୍ଦ୍ର ଗ୍ରହଣ । କେତେକ ପୂର୍ଣ୍ଣିମୀରେ ଏହିଭଳି ଗ୍ରହଣ ହୋଇ-ଥାଏ । ପୁଣି କେତେକ ଅମାବାସ୍ୟା ଦିନରେ ସୂର୍ଯ୍ୟପରାଗ ହୋଇଥିବାରୁ ସୂର୍ଯ୍ୟ ଲୁଚି ଯାଆନ୍ତି ।

ସୂର୍ଯ୍ୟଙ୍କ ଚାରିପାଖରେ ପୃଥିବୀ, ଚନ୍ଦ୍ର ଏବଂ ଅନ୍ୟର ଅନେକ ଜ୍ୟୋତିଷ୍କ ଘୂରୁଥାଆନ୍ତି । ଏଇମିତି ଘୂରୁ ଘୂରୁ କେତେକ ପୂର୍ଣ୍ଣିମୀ ଦିନ ସେମାନେ ଗୋଟିଏ ସରଳ ରେଖାରେ ରହିଯାଆନ୍ତି । ଆମ ପୃଥିବୀ ସୂର୍ଯ୍ୟ ଓ ଚନ୍ଦ୍ରଙ୍କ ମଝିରେ ରହିଯାଏ । ତେଣୁ ସୂର୍ଯ୍ୟଙ୍କଠାରୁ ଆଲୁଅ ଆଉ ଚନ୍ଦ୍ରଙ୍କ ଉପରେ ପଡ଼ିପାରେ ନାହିଁ । ଅର୍ଥାତ୍—ଗୋଟିଏ ଜଳନ୍ତା ମହମବତୀ ଆଗରେ ବହିଟିଏ ଦେଖାଇଲେ କ'ଣ ହେବ ? ବହିର ପଛ ପଟଟି ଟିକ୍ ଅନ୍ଧାର ହୋଇଯିବ । ଏହାକୁ ବହିର ଛାୟା କୁହାଯାଏ । ବହି ଭିତର ଦେଇ ମହମବତୀ ଆଲୁଅ ବାହାରକୁ ଯାଇପାରୁ ନଥିବାରୁ ଛାଇ ସୃଷ୍ଟି ହେଲା । ଏଭଳି ପଦାର୍ଥ ଗୁଡ଼ିକ ଅସ୍ୱଚ୍ଛ ପଦାର୍ଥ ।




ଚିତ୍ର ୨ (କ)




ଚିତ୍ର ୨ (ଖ)

ଆମ ପୃଥିବୀ ମଧ୍ୟ ଏକ ଅସ୍ୱଚ୍ଛ ପଦାର୍ଥ । ତେଣୁ ସୂର୍ଯ୍ୟଙ୍କର ଆଲୋକ ପୃଥିବୀ ଉପରେ ପଡ଼ିଲେ ପୃଥିବୀର ଛାଇ ଉତ୍ପନ୍ନ ହୁଏ । ଏହି ଛାଇକୁ (ଚିତ୍ର ୨ (ଖ) ) ଲକ୍ଷ୍ୟକଲେ ତୁମେ ଦେଖିପାରିବ ଏହାର ମଝି ଅଂଶଟି ଗାଢ଼ କଳା ଓ ଅନ୍ୟାନ୍ୟ ଅଂଶ ଫିକା ବା କମ୍ କଳା । ମଝି ଅଂଶର ଗାଢ଼ କଳା ଛାଇକୁ ଘନଚ୍ଛାୟା ବା ପ୍ରଚ୍ଛାୟା ଏବଂ ବାହାରର

କମ୍ କଳା ଅଂଶକୁ ଉଠାଯାଉଥିବା ଜଣାଯାଏ । ସୂର୍ଯ୍ୟ ଚନ୍ଦ୍ର ମଝିରେ ପୃଥିବୀ ରହିଗଲେ ଚନ୍ଦ୍ର ପୃଥିବୀର ଛାୟା ମଧ୍ୟରେ ରହି ଯାଇଥାଏ । ଚନ୍ଦ୍ରର ଆକାର ପୃଥିବୀଠାରୁ ଢେର ସାନ ହୋଇଥିବାରୁ ଏହା ସମ୍ପୂର୍ଣ୍ଣ ଭାବେ ପୃଥିବୀର ଛାୟା ଭିତରେ ରହିବା ସମ୍ଭବ । ଚନ୍ଦ୍ର ପୃଥିବୀର ଛାଇରେ ଲୁଚିଗଲେ ଆମକୁ ଦିଶେ ନାହିଁ ଓ ଚନ୍ଦ୍ର ଗ୍ରହଣ ହେଲା ବୋଲି ଜଣାଯାଏ ।




ଚିତ୍ର ୩ (କ)

ଚନ୍ଦ୍ର ଗ୍ରହଣ ଦୁଇପ୍ରକାରର—ପୂର୍ଣ୍ଣଗ୍ରାସ ଚନ୍ଦ୍ର ଗ୍ରହଣ ଓ ଆଂଶିକ ଚନ୍ଦ୍ର ଗ୍ରହଣ । (ଚିତ୍ର ୩ କ)କୁ ଲକ୍ଷ୍ୟକଲେ ତୁମେ ଚନ୍ଦ୍ରର ବିଭିନ୍ନ ଅବସ୍ଥା ଦେଖିପାରିବ । କେବଳ ୩ନମ୍ବରର ଅବସ୍ଥାରେ ପୂର୍ଣ୍ଣଗ୍ରାସ ଚନ୍ଦ୍ର ଗ୍ରହଣ ହୋଇଥାଏ ସବୁ ପୂର୍ଣ୍ଣିମାରେ ସୂର୍ଯ୍ୟ, ଚନ୍ଦ୍ର, ପୃଥିବୀ ଏକ ସରଳ ରେଖାରେ ରହୁ ନଥିବାରୁ ଚନ୍ଦ୍ର ଗ୍ରହଣ ହୁଏ ନାହିଁ ।

ଏହିଭଳି କେତେକ ଅମାବାସ୍ୟା ଦିନ ପୃଥିବୀ ଓ ସୂର୍ଯ୍ୟ ମଝିରେ

ଚନ୍ଦ୍ର ରହିଯାଏ । ପୃଥିବୀର କେତେକ ଅଂଶରେ ଚନ୍ଦ୍ରର ଛାଇ ପଡ଼ି ସୂର୍ଯ୍ୟଙ୍କୁ ଲୋକମାନଙ୍କ ଠାରୁ ଲୁଚାଇ ରଖେ । ଏହି ଅବସ୍ଥାକୁ ସୂର୍ଯ୍ୟ-ଗ୍ରହଣ କୁହାଯାଏ । (ଚିତ୍ର ୩ ଖ)ରେ ବିଭିନ୍ନ ପ୍ରକାର ସୂର୍ଯ୍ୟଗ୍ରହଣ ଦେଖାଇ ଦିଆଯାଇଛି । ଚନ୍ଦ୍ର ଗ୍ରହଣ ପରି ସୂର୍ଯ୍ୟଗ୍ରହଣ ମଧ୍ୟ ଦୁଇ ପ୍ରକାରର—ସମ୍ପୂର୍ଣ୍ଣ ସୂର୍ଯ୍ୟଗ୍ରହଣ ଓ ଆଂଶିକ ସୂର୍ଯ୍ୟଗ୍ରହଣ । କିନ୍ତୁ ଚନ୍ଦ୍ରର ଆକାର ଦୃଷ୍ଟିରୁ ସମ୍ପୂର୍ଣ୍ଣ ସୂର୍ଯ୍ୟଗ୍ରହଣ ଅଧିକାଂଶ ସମୟରେ ସମ୍ଭବ ନୁହେଁ ।




ଚିତ୍ର ୩ (ଖ)

ଚନ୍ଦ୍ର ଗ୍ରହଣ ଓ ସୂର୍ଯ୍ୟଗ୍ରହଣ ସମୟରେ ଚନ୍ଦ୍ର ଓ ସୂର୍ଯ୍ୟଙ୍କଠାରୁ ଆସୁଥିବା ଆଲୋକ ଆମ ପକ୍ଷେ କ୍ଷତିକାରକ । ତେଣୁ ଖାଲି ଆଖିରେ ଚାହିଁବାକୁ ମନା କରାଯାଇଥାଏ । ଏହି ସମୟରେ ଖାଇଲେ ଖାଦ୍ୟ ଭଲରେ ହଜମ ହୋଇ ପାରୁ ନଥିବାରୁ ଆମକୁ ଖାଇବାକୁ ମନା କରାଯାଇଥାଏ ।

ଚେଷ୍ଟ ଘରେ ଘେଟୋରେ ବନ୍ଦ କରାଯାଇଥାଏ । ଏବେ ବୁଝିଲତ ଜହ୍ନମାମୁଁ କାର୍ତ୍ତିକ ଆଜ ଲୁଚିଥିଲେ । ହେଉ—ଉଠ, ମାମୁଁ ବାହାର ପଡ଼ିଲେଣି, ଖେଳିବ ଯାଓ, ସେତେବେଳ ପୂନେଇ ଜହ୍ନ ଉଇଁ ଅସିଥାଏ । ପିଲ୍ଲଏ ନାଚ ନାଚ ଖେଳିବାକୁ ବାହାରିଗଲେ ।

***

# ଆସ ଦେଖିବା କଥା କୁହା
# ରେଳଗାଡ଼ି କେମିତି ଧାଉଁଛି

ବଡ଼ଦିନ ଛୁଟି ପାଖେଇ ଆସିଥାଏ । ଗୁରୁଜୀ ମହାଶୟ ପିଲା-
ମାନଙ୍କୁ ନେଇ ନନ୍ଦନକାନନ ବାହାରିଲେ । ସକାଳୁ ସକାଳୁ ଖାଇପିଇ
ରେଳଗାଡ଼ିରେ ଚଢ଼ିଗଲେ । ଗାଡ଼ି ପେଁ କରି କାହାଳୀ ବଜାଇ ଝୁଲି
ଝୁଲି ଆଗକୁ ଚାଲିଲା । କ୍ରମେ କ୍ରମେ ରେଳଗାଡ଼ି ଭୁସ୍ ଭୁସ୍ ହୋଇ
ଆଗକୁ ମାଡ଼ି ଚାଲିଲା । ପିଲାଏ ଝରକା ବାଟରେ ରେଳ ଧାରଣାରେ
ଦୁଇପଟକୁ ଚାହିଁ ନାଚ ଯାଉଥାନ୍ତି । ସୁନ୍ଦର ସୁନ୍ଦର ଘରଦ୍ୱାର, ଗଛ,
ବଣପାହାଡ଼, ନଈନାଳ ପଛକୁ ଧାଇଁବାରେ ଲାଗିଲେ । ପିଲାଙ୍କ ମନରେ
ପ୍ରଶ୍ନ—ରେଳଗାଡ଼ି ଆଗକୁ ମାଡ଼ିଗଲା କେବଳ ଦୁଇକଡ଼ରେ ଥିବା
ଅନ୍ୟାନ୍ୟ ଜିନିଷସବୁ ପଛକୁ ଧାଉଁଛନ୍ତି କେମିତି । ଗୁରୁଜୀଙ୍କୁ ପଚାରିବେ
ପଚାରିବେ ହୋଇ ରହିଗଲେ, ସେତେବେଳକୁ ଗୁରୁଜୀ ମଜାରେ ଶୋଇ
ଯାଇଥାଆନ୍ତି । କିଛି ସମୟ ପରେ ବାରଙ୍ଗ ଷ୍ଟେସନରେ ଗାଡ଼ି ଲାଗି-
ଗଲା । ପିଲାମାନେ ଗାଡ଼ିରୁ ଓହ୍ଲାଇ ଚାଲିଲେ ନନ୍ଦନକାନନ ଆଡ଼କୁ ।
ବନସାରା ଭଲ ଭଲ ଜୀବଜନ୍ତୁଙ୍କ ମେଳରେ ବୁଲି ବୁଲି ସେକଥା
ଭୁଲିଗଲେ । ବୁଲାବୁଲି ସାରି ଘରକୁ ଫେରିବାକୁ ବସିଲେ । ପୁଣି
ସନ୍ଧ୍ୟାରେ ରେଳଗାଡ଼ିରେ ଯିବାକୁ ହେବ, ଘରେ ପହଞ୍ଚି ବିଶ୍ରାମ କରିବା
ବର୍ତ୍ତମାନର ପ୍ରଥମ ଦରକାରୀ କାମ । ସନ୍ଧ୍ୟା ଗାଡ଼ି ଷ୍ଟେସନରେ ପହଞ୍ଚି
ଯିବାକ୍ଷଣି ଚଞ୍ଚଳ ହୋଇ ସମସ୍ତେ ଚଢ଼ିଗଲେ । କିଛି ସମୟ ପରେ
ଗାଡ଼ି ଧିରେ ଧିରେ ହଲି ହଲି ଆଗକୁ ଚାଲିଲା ।

ଗୁରୁଜୀ ମହାଶୟ ପିଲମାନଙ୍କ ସହିତ ବନଯାକ ଦେଖିଥିବା ବାଘ, ସିଂହ, ବଣମେଣ୍ଢା, ଓଟପକ୍ଷୀ ପ୍ରଭୃତିଙ୍କ ବିଷୟରେ ଅନେକ ପ୍ରଶ୍ନ ପଚାରି ବୁଝାଇବାକୁ ଲାଗିଲେ । ଆଲୋଚନା ଚାଲିଥିବା ବେଳେ ଗୁରୁଜୀ ପଚାରିଲେ—"ଆଚ୍ଛା ପିଲାଏ, ତୁମେମାନେ ତ ରେଳଗାଡ଼ି ଦେଖିଲ, ହେଲେ କଏ କଥାକୁହା ରେଳଗାଡ଼ି ଦେଖିଛ ?" ସମସ୍ତେ ଅନ୍ୟର ମୁହଁକୁ ଚାହିଁବାକୁ ଲାଗିଲେ, ରେଳଗାଡ଼ି କଥା କହୁଛି କେମିତି ? ପୁଣି ଥରେ ଗୁରୁଜୀ କହିଲେ—"ସେ ରେଳଗାଡ଼ି ଖାଲି କଥା କୁହେ ନାହିଁ, ନାଚେ, କୁଦେ, ଖେଳେ, ବୁଲେ ଏମିତିକି ସିନେମା ମଧ୍ୟ ଦେଖେ", ରେଳଗାଡ଼ି ସିନେମା ଦେଖିବା କଥା ପିଲାମାନଙ୍କୁ ଆହୁରି ଆଶ୍ଚର୍ଯ୍ୟ ଲାଗିଲା । କେହି ବୁଝିପାରୁ ନଥାନ୍ତି । ଏମାନଙ୍କ ଅବସ୍ଥା ଦେଖି ଗୁରୁଜୀ ହସି ହସି କହିଲେ, "କଥା କୁହା ରେଳଗାଡ଼ି ଗୁଡ଼ିଏ ଆମ ଗାଡ଼ି ଭିତରେ ଯାଉଛନ୍ତି ।" ଏଁ — ରେଳଗାଡ଼ି ବି ରେଳଗାଡ଼ିରେ ଚଢେ । ସେ ପ୍ରକାର ରେଳଗାଡ଼ି ବୋଧେ ଅନ୍ୟ ଦେଶରେ ଅଛି । "ଆରେ—ବୋକା ଦଳ, ତୁମେ ସମସ୍ତେ ଗୋଟିଏ ଗୋଟିଏ ରେଳଗାଡ଼ି । ତେଣୁ ମଣିଷକୁ କଥାକୁହା ରେଳଗାଡ଼ି ବୋଲି କୁହାଯାଇଥାଏ । ରେଳଗାଡ଼ିରେ ଇଞ୍ଜିନ ଡବା ପ୍ରଭୃତି ଅଂଶ ଥିବା ଭଳି ଆମର ମଧ୍ୟ ଅନେକ ଅଂଶ ଅଛି । ମୁଣ୍ଡ, ମୁହଁ, ଆଖି, ନାକ, ପାଟି, ହାତ, ଗୋଡ଼ ପ୍ରଭୃତି । ଏମାନଙ୍କୁ ଆମେ ମଣିଷରେ ଅଙ୍ଗ ବୋଲି କହିଥାଉ । କେତେ ଗୁଡ଼ିଏ ଅଙ୍ଗକୁ ଠିକ୍ ଭାବରେ ଯୋଡ଼ିଦେଲେ ଆମେ ପାଉ ମାନବ ଶରୀର ।

ତୁମେ ଦେଖୁଥିବା ମଣିଷ ଗୁଡ଼ିକ ଖୁବ୍ ସୁନ୍ଦର ଦିଶନ୍ତି । କିନ୍ତୁ ପ୍ରଥମରୁ ମଣିଷ ଏଭଳି ସୁନ୍ଦର ହୋଇ ତିଆରି ହୋଇ ନଥାଏ । ଦେବା ପୂଜାବେଳେ ଦେଖିଥିବ ଦେବୀ ମୂର୍ତ୍ତିଗୁଡ଼ିକ ବଜାରୁ ଆଣିଥିଲେ ଖୁବ୍ ଚକ୍‌ଚକ୍ ମାରନ୍ତି । ଏହି ସବୁ ମୂର୍ତ୍ତି ଗୁଡ଼ିକର ଭିତରେ କ'ଣ ଅଛି କହିପାରିବ, ସେ ଗୁଡ଼ିକ ହେଲା କେଇଖଣ୍ଡ ବାଉଁଶ, କିଛି ନଡ଼ା, ଟିକିଏ କନା ଏବଂ ମାଟି ।

ପ୍ରଥମେ କାରିଗର ଖଣ୍ଡିଏ କାଠରେ ନଡ଼ା ବାନ୍ଧି ମୂର୍ତ୍ତିର ଢେଙ୍କିଳ୍ ତିଆରି କରେ । ଏହାକୁ ଥୁମ୍ବ କହନ୍ତି । କେହି କେହି ପଞ୍ଜର ବୋଲି ମଧ୍ୟ କହିଥାଆନ୍ତି । ତାପରେ ସେହି ପଞ୍ଜର ଉପରେ ମାଟି ବୋଳ କନା ଚଢ଼ାଇ ଦିଆଯାଏ ଏବଂ ବିଭିନ୍ନ ପ୍ରକାର ରଙ୍ଗ ବୋଳା ହୋଇ ଖୁବ୍ ସୁନ୍ଦର ମୂର୍ତ୍ତିଟି ବାହାରକୁ ଆସେ । ମଣିଷ ଦେହର ମଧ୍ୟ ଠିକ୍ ଏଇ ମୂର୍ତ୍ତି ଭଳି । ମଣିଷର ଏଇ ଚମଡ଼ା, ମାଂସ ତଳେ ଅଛି କେବଳ ହାଡ଼ର ଗୋଟିଏ ଥୁମ୍ବ । ଏହାକୁ କଙ୍କାଳ ବା ଅସ୍ଥି କୁହାଯାଏ । କଙ୍କାଳଟିରେ ମୋଟ ୨୦୬ ଖଣ୍ଡ ସାନ ବଡ଼ ହାଡ଼ ଥାଏ ।



ମାନବ ଶରୀରର ମୁଖ୍ୟ ଅଙ୍ଗଗୁଡ଼ିକ ହେଲା ମୁଣ୍ଡ, ହାତ, ଗୋଡ଼, ଛାତି, ଶ୍ୱାସଯନ୍ତ୍ର ହୃତପିଣ୍ଡ ଇତ୍ୟାଦି ।

ମୁଣ୍ଡ ହେଉଛି ଶରୀରର ସବୁଠାରୁ ପ୍ରଧାନ ଅଙ୍ଗ । ରେଳଗାଡ଼ିର ଇଞ୍ଜିନ ପରି ଏହାର ସମାନ ! ଇଞ୍ଜିନ ଘରେ ଥାଇ ଚାଳକ ଷ୍ଟିଅରିଂ ଚକ ଘୂରାଇ ଗାଡ଼ିଟିକୁ ଠିକ୍ ରାସ୍ତାରେ ଚଳାଇଥାଏ । ଚାଳକର ଭୁଲ ହେଲେ ଗାଡ଼ି ଦୁର୍ଘଟଣାରେ ପଡ଼ି ନଷ୍ଟ ହେବା ସୁନିଶ୍ଚିତ । ମଣିଷ ଶରୀରର ଚାଳକ ତାର ମସ୍ତିଷ୍କ ଏହା ମୁଣ୍ଡର ଖପୁରୀ ଭିତରେ ଥାଏ । ମସ୍ତିଷ୍କରେ ତୁମେ ଖାଉଥିବା ବସା ଦହିପରି ଗୋଟିଏ ପଦାର୍ଥ ଥାଏ । ଦେହର ପ୍ରତ୍ୟେକ ଅଂଶରୁ ଖୁବ୍ ସରୁ ସରୁ ତନ୍ତୁ ଭଳି ଜିନିଷମାନ ଯାଇ ମସ୍ତିଷ୍କ ସହିତ ମିଶିଛନ୍ତି । ଏମାନେ ହେଲେ ସ୍ନାୟୁ । ସ୍ନାୟୁଗୁଡ଼ିକ ବସ୍ତାକଣ୍ଡରେ ଥିବା ଟେଲିଫୋନ ତାର ଭଳି କାମ କରନ୍ତି । ଏମାନଙ୍କ ଦ୍ୱାରା ମସ୍ତିଷ୍କ ଦେହର ଯେ କୌଣସି ଅଂଶକୁ ଖବର ପଠାଏ । ଓ ଖବର ପାଇଥାଏ । ଯେତେବେଳେ ତୁମେ ଖାଇବା ଥାଳରେ ମାଛିଟିଏ ଉଡ଼ି ଆସି ବସି ପଡ଼େ ତୁମେ କ'ଣ କର ? ହାତଦ୍ୱାରା ମାଛିଟିକୁ ଘଉଡ଼ି ଦେଇଥାଅ । ମାଛିଟି ଭାତ ଥାଳ ଉପରେ ବସିବା ମାତ୍ରେ ଆଖିରୁ ମସ୍ତିଷ୍କକୁ ଯାଇଥିବା ସ୍ନାୟୁ ଖବର ପଠାଇଦିଏ । ସେଇ ଖବର ପାଇ ମସ୍ତିଷ୍କ ହାତକୁ ତା କାମ କରିବାକୁ କହିଥାଏ । ମସ୍ତିଷ୍କରେ ଆଘାତ ଲାଗିଲେ ମଣିଷ ପାଗଳ ହୋଇଯାଏ ଏବଂ ଜୋର ଆଘାତ ଲାଗିଲେ ମରିଯାଏ । ତେଣୁ ତୁମେ କାହାକୁ ମୁଣ୍ଡର ପଛ ପାଖକୁ ମାରିବା ଅନୁଚିତ ।

ମୁଣ୍ଡ ସହିତ ଲାଗିଥିବା ସବୁଠାରୁ ସୁନ୍ଦର ଅଙ୍ଗଟି ଆମର ମୁହଁ । ଏଠାରେ ଆମର ଆଖି, ନାକ, କାନ, ପାଟି ରହିଛି । ମୁହଁ ନ ଥିଲେ ମଣିଷକୁ ଚିହ୍ନି ହେବ ନାହିଁ । ଆମର ଆଖିରେ ରେଳଗାଡ଼ି ଆଗରେ ଥିବା ବଡ ଆଲୁଅ ପରି ବାଟ ଦେଖାଏ ।




ଦେଖ ତଳକୁ ଲକ୍ଷ୍ୟ କଲେ ତୁମେ ଜାଣିପାରିବ ଯେ ତୁମ ଦେହର ଗୋଟିଏ ହାଡ଼ରେ ତିଆରି ପିଞ୍ଜରା ରହିଛି । ଏହାକୁ ଛାତି ବା ବକ୍ଷ କୁହାଯାଏ । ମଣିଷ ପିଞ୍ଜରା ୧୪ ଯୋଡ଼ା ହାଡ଼ରେ ତିଆରି । ଏହି ପିଞ୍ଜରାର ଦୁଇ ପାଖରେ ହାତ ମାରିଲେ କିଛି ଗୋଟିଏ ଧକ୍—ଧକ୍ ହୋଇ ଚାଲୁଥିବାର ଜଣାଯାଏ । ସେ ଗୁଡ଼ିକୁ ଫୁସ୍‌ଫୁସ୍ କୁହାଯାଏ । ପ୍ରତ୍ୟେକ ଫୁସ୍‌ଫୁସ୍ ଦେଖିବାକୁ ଛୋଟ ଛୋଟ ପଣସ ଫଳ ପରି । ପଣସର ଥିବା କୋଷା ପରି ଏଥିରେ ଅନେକ ଗୁଡ଼ିଏ ଛୋଟ ଛୋଟ ଥଳି ଅଛି । ଏଗୁଡ଼ିକୁ କୁହାଯାଏ ବାୟୁକୋଠରୀ । ଏହି କୋଠରୀ ଗୁଡ଼ିକ ବାୟୁରେ ପୂର୍ଣ୍ଣ ହୋଇ ଆମ ଦେହର ପ୍ରତ୍ୟେକ ଅଂଶକୁ ଯୋଗାଇ ଥାଆନ୍ତି । ଫୁସ୍‌ଫୁସ୍‌ର ବାୟୁ କୋଠରୀ ଗୁଡ଼ିକ ନାକର ଦୁଇ 'ପୁଡ଼ା' ସହ ନଳୀ ଦ୍ୱାରା ଯୋଡ଼ା ହୋଇ ରହିଛନ୍ତି । ଏହି ନଳୀମାନଙ୍କ ଭିତରୁ ଅଦରକାରୀ ବାୟୁ ବାହାରକୁ ଦେହ ଭିତରକୁ ଆଣି ଏବଂ ଭିତରେ ଦେଇ ଆମେ ବାହାରୁ ବାୟୁ ଛାଡ଼ିଥାଉ । ବାହାରୁ ଆସୁଥିବା ଅମ୍ଳଜାନ ଓ ବାହାରକୁ ଛାଡ଼ୁଥିବା ବାୟୁ ଅଙ୍ଗାରକାମ୍ଳ । ଫୁସ୍‌ଫୁସ୍‌ରେ ଦେହ ଭିତରକୁ ଆସୁଥିବା ମଇଳା

ତାମ୍ର ଗୁଣିହୋଇ ପରିଷ୍କାର ହୁଏ । ତେଣୁ ଆମକୁ ପବନରେ ରୋଗ ହୁଏ ନାହିଁ । ଏବେ ବୁଝି ପାରୁଥିବ ଏଇ ଅଂଶଟି କେତେ ଦରକାରୀ ।

ବେଳେବେଳେ ଖେଳିବା ବୁଲିବା ବେଳେ ତୁମର ଦେହ କଣ୍ଟି ଆ ହୋଇ ଲାଲରକ୍ତ ବାହାରିଥାଏ । ରକ୍ତ ଦେହ ଭିତରକୁ ଆସେ କେଉଁଠୁ ! ଆମେ ଖାଉଥିବା ଭାତ, ଡାଲି, ମାଛ ମାଂସ, ଦୁଧ, ଦହିରୁ ରକ୍ତ ତିଆରି ହୁଏ । କଠିନ ଖାଦ୍ୟରୁ ପାଣି ଭଳି ରକ୍ତ କପରି ହୁଏ ? ଯେଉଁ ଉପାୟରେ ରକ୍ତ ତିଆରି ହୁଏ ତାହା ପାଚନ ପ୍ରକ୍ରିୟା ଏବଂ ଦେହର ଯେଉଁ ଅଂଶରେ ଏହା ହୁଏ ତାହା ପାକଯନ୍ତ୍ର । ପାକଯନ୍ତ୍ରର ପ୍ରଧାନ ଅଙ୍ଗର ନାମ ପାକସ୍ଥଳୀ । ଏହା ଦେଖିବାକୁ ଫୁଟ୍‌ବଲ ଭିତରେ ଥିବା ରବର ଥଳିପରି । ପାକସ୍ଥଳୀଟି ବଡ଼ ହେଲେ ପେଟ ଫୁଲିଲା ଭଳି ଦିଶେ ଓ ତୁମେ ତାକୁ ପେଟ୍ ବୋଲି କହି ଚିଡ଼ାଅ । ଖାଦ୍ୟରୁ କେବଳ ରକ୍ତ ହୁଏ ନାହିଁ । ଆହୁରି ଅନେକ ପ୍ରକାର ତରଳ ପଦାର୍ଥ ହୋଇଥାଏ, ଏସବୁ ଆମକୁ ବଢିବାରେ ସାହାଯ୍ୟ କରି ସୁସ୍ଥ ଓ ବଳବାନ କରନ୍ତି, ନଚେତ୍ ଆମେ କିଛି କାମ କରିପାରନ୍ତେ ନାହିଁ ।

ଖାଦ୍ୟରୁ ହେଉଥିବା ରକ୍ତ ପ୍ରଥମେ ପରିଷ୍କାର ନଥାଏ । ରକ୍ତକୁ ପରିଷ୍କାର କରିବାପାଇଁ ଆମ ଦେହରେ ଥିବା ଅଙ୍ଗକୁ ହୃତ୍‌ପିଣ୍ଡ କହନ୍ତି । ଏହା ଠିକ୍ ଗୋଟିଏ ଗ୍ରେଟ ପାନପତ୍ର ପରି । ହୃତ୍‌ପିଣ୍ଡରେ 'ଚାରିଗୋଟି କୋଠରୀ ଅଛି । ହୃତ୍‌ପିଣ୍ଡଟି ଗୋଟିଏ ପାଣିପମ୍ପ (ନଳକୂପ) ପରି କାମ କରିଥାଏ ।

ଏ ସବୁ ଥାଇ ମଧ୍ୟ ଆମେ ଠିକ୍ ଭାବରେ ଚାଲିବା, ବୁଲିବା କରିପାରନ୍ତେ ନାହିଁ, ସିଧା ହୋଇ ଠିଆ ହୋଇପାରନ୍ତେ ନାହିଁ, ଆମ ଦେହକୁ ଶକ୍ତ ଓ ସିଧା କରି ଧରିଥିବା ଅଙ୍ଗଟିର ନାମ ମେରୁଦଣ୍ଡ, ଏହା ୩୨ ଖଣ୍ଡ ହାଡ଼ରେ ତିଆରି ।

ଆରେ—ଗାଡ଼ି ବର୍ତ୍ତମାନ ଆସି ଆମ ଷ୍ଟେସନରେ ପହଞ୍ଚ ଗଲାଣି, ଆସ ଚଞ୍ଚଳ ଓହ୍ଲାଇ ଯିବା, ପୁଣି ଥରେ ଶରୀରର ଅନ୍ୟାନ୍ୟ ଅଙ୍ଗ ବିଷୟରେ କହିବି ।

***

# ବୁଦ୍ଧି ଯାହାର ବଳ ତାହାର

ପାଠ ପଢ଼ା ସରିଲା, ପିଲାମାନେ ଆନନ୍ଦରେ ବିଦ୍ୟାଳୟରୁ ଘରକୁ ଫେରି ଆସୁଥାଆନ୍ତି, ବାଟରେ କେତେ ଗୁଡ଼ିଏ ଲୋକ ଜମା ହୋଇ-ଥିବାର ଦେଖି ଅଟକିଗଲେ । ସେମାନେ ଗୋଟିଏ ବଡ଼ ପଥର ଖଣ୍ଡକୁ ଘଷ୍ଟାରି ଗୋଟିଏ ପଟରୁ ଅନ୍ୟ ପଟକୁ ନେବାକୁ ଲାଗିଥିଲେ । କିନ୍ତୁ ପଥରଟି ଥିଲା ଖୁବ୍ ବଡ଼ । ତେଣୁ ସେମାନେ ଠେଲି ଠେଲି ନେଇ ପାରୁ ନଥିଲେ । ଅଧିକ ପରିଶ୍ରମ ଫଳରେ ସମସ୍ତେ ହାଲିଆ ହୋଇ ପଡ଼ି-ଥିଲେ, ସେମାନଙ୍କ ମଧ୍ୟରୁ କେତେଜଣ ନିସ୍ତେଜ ହୋଇ ତଳେ ବସି ପଡ଼ିଥିଲେ । ସେହି ସମୟରେ ଜଣେ ବୁଢ଼ା ଲୋକ ସେଇ ବାଟ ଦେଇ ଯାଉଥିଲେ । ସେ ସବୁ ଦେଖି କହିଲେ, "ଆରେ, ପିଲାଏ ଗୋଟିଏ ପଟା ଓ ଗୋଟିଏ ଶାବଳ ଆଣ । ଦେଖିବ ପଥରଟି କିପରି ସୁବିଧାରେ ଘେଷ୍ଟା ଅରପଟକୁ ଖସିଯିବ । ପ୍ରକୃତରେ ପିଲାମାନେ ଦେଖିଲେ ଯେ, ପଟା ଓ ଶାବଳ ଦ୍ୱାରା ପଥରଟି ଅକ୍ଳେଶରେ ଗଡ଼ିଲେ" କଥାରେ ଏତେ ବଡ଼ କାମ ଏତେ ସହଜରେ ହୋଇପାରିଲା ତାହା ସେମାନେ ବୁଝି ପାରିଲେ ନାହିଁ । ତା ପରଦିନ ବିଦ୍ୟାଳୟରେ ଶିକ୍ଷକଙ୍କୁ ପଚାରିବାରୁ ସେ କହିଲେ "ଏହା ବୁଦ୍ଧିର ଖେଳ, କେବଳ ବଳ ଦ୍ୱାରା ସବୁକାମ କରିହେବ ନାହିଁ । କିନ୍ତୁ ବୁଦ୍ଧିଆ ଲୋକ ଦୁର୍ବଳ ହେଲେ ମଧ୍ୟ ଖୁବ୍ ବଡ଼ ବଡ଼ କାମ ସହଜରେ କରିଦିଏ । ବୁଢ଼ା ଲୋକ ଶାବଳ ବ୍ୟବହାର କରି ଏ କାମ କରାଇ ଦେଲେ । ଏହିପରି ସରଳ ଯନ୍ତ୍ରମାନଙ୍କୁ କୁହାଯାଏ ଘରଦଣ୍ଡ । କେବଳ ଶାବଳ କାହିଁକି ତୁମ ଘରେ ବୁଢ଼ୀମା ବ୍ୟବହାର କରୁଥିବା ଗୁଆକାତି, ଧାନକୁଟା ଢିଙ୍କି, ବଣିଆର ଚିମୁଟା, କୁଅରୁ

ଚାଷି ଜାଡିବା କପିକଳ ଓ କଣ୍ଟାପିଣ୍ଡା ହାତୁଡ଼ି ପ୍ରଭୃତି ଗୋଟିଏ ଗୋଟିଏ ଯନ୍ତ୍ରଦଣ୍ଡ । ନେମନ୍ତ୍ରଳ ଯନ୍ତ୍ରଦଣ୍ଡ ସାହାଯ୍ୟରେ ଖୁବ୍ ଓଜନିଆ ପଦାର୍ଥ ସବୁ ଗୋଟିଏ ଜାଗାରୁ ଅନ୍ୟ ଜାଗାକୁ ଉଠାଇ ରଖାଯାଏ । ତୁମେ ପାରାଦୀପ ବନ୍ଦରକୁ ଗଲେ ଦେଖିବ କପରି ଟନ ଟନ ଲୁହାପଥର ଏକା ଥରକେ ଜାହାଜ ଉପରକୁ ଉଠି ପାରୁଛି ଯାହାକି ଶହ ଶହ ଲୋକ ଥରକରେ ଉଠାଇ ପାରନ୍ତେ ନାହିଁ । ବଜାରରେ ଦୋକାନୀ ଓଜନ କରୁଥିବା ନକତ ସମସ୍ତେ ଦେଖିଥିବ, ଏହା ଏକ ସରଳ ଯନ୍ତ୍ରଦଣ୍ଡ ।

## ବିଭିନ୍ନ ପ୍ରକାରର ଯନ୍ତ୍ରଦଣ୍ଡ—

ଆକାର ଓ କାର୍ଯ୍ୟ ଅନୁସାରେ ଯନ୍ତ୍ରଦଣ୍ଡ ଗୁଡ଼ିକୁ ତିନିଶ୍ରେଣୀରେ ବିଭକ୍ତ କରାଯାଇଛି ।

### (କ) ପ୍ରଥମ ଶ୍ରେଣୀ ଯନ୍ତ୍ରଦଣ୍ଡ —

ଘରେ ଧାନ କୁଟିବା ପାଇଁ ବ୍ୟବହାର ହେଉଥିବା ଢିଙ୍କି, ଶାବଳ, ବଜାର ନକତ ଏହି ଶ୍ରେଣୀରେ ।

### (ଖ) ଦ୍ୱିତୀୟ ଶ୍ରେଣୀ ଯନ୍ତ୍ରଦଣ୍ଡ—

ବୁଢ଼ୀ ମାଆଙ୍କ ଗୁଆକାତ, ଘରର କବାଟ ଓ ଟ୍ରଲି ଗାଡ଼ି ଦ୍ୱିତୀୟ ଶ୍ରେଣୀର ଯନ୍ତ୍ରଦଣ୍ଡ ।

### (ଗ) ତୃତୀୟ ଶ୍ରେଣୀ ଯନ୍ତ୍ରଦଣ୍ଡ—

ବଣିଆର ଚିମୁଟା, ପାଣିଉଠା କପିକଳ, ନେନ ପ୍ରଭୃତି ଏହି ଶ୍ରେଣୀର ।

ଏମାନଙ୍କର ଗଠନ ଓ କାର୍ଯ୍ୟକାରିତା ସମ୍ବନ୍ଧରେ ପରେ ଆଲୋଚନା କରିବା ।



# ଭସିଲା ପଥର ବୁଡ଼ିଲା ଶୋଲ

ତୁମେ ସମସ୍ତେ ନନ୍ଦନକାନନ ଦେଖିଅଛ । କହିଲ ଦେଖି—ସବୁଠାରୁ ବଡ଼ ଜୀବ କିଏ ? ନିଶ୍ଚୟ ହାତୀ ହେବ । କିଏ ହାତୀଟିଏ ଓଜନ କରିପାରିବ । ହାତୀ କେଉଁ ଉପାୟରେ ଓଜନ କରାଯାଏ ? ତୁମକୁ ଆଶ୍ଚର୍ଯ୍ୟ ଲାଗିଲେ ମଧ୍ୟ ଶହ ଶହ ବର୍ଷ ତଳେ ଜଣେ ପାଗଳ ହାତୀ ଓଜନ କରିବା ଉପାୟ ବାହାର କରିଥିଲେ । ସେ ଇଟାଲି ଦେଶର ଲୋକ । ନାଆଁଟି ଆର୍କିମିଡ଼ିସ । ସବୁବେଳେ ଦୋ ଦୋ ବହି ପଢ଼ି ବାରେ ବ୍ୟସ୍ତ ରହି ନିଜର ଖାଦ୍ୟ, ପୋଷାକ ପ୍ରତି ସେ ଦୃଷ୍ଟି ଦେଇ ପାରୁ ନଥିଲେ । ମାସ ମାସ ଧରି ବାଳ, ଦାଢ଼ି କ୍ଷୌର ନ ହୋଇ ଅପରିଚ୍ଛନ୍ନ ଦିଶୁଥାଏ । ରାସ୍ତାରେ ଗଲାବେଳେ ଅନ୍ୟ ମନସ୍କ ଭାବରେ କ'ଣ ଭାବି ଭାବି ଯାଆନ୍ତି । ଲୋକେ ସମସ୍ତେ ତାଙ୍କୁ କହୁଥିଲେ ପାଗଳଟାଏ । ଥରେ ଇଟାଲୀ ଦେଶ ସମ୍ରାଟଙ୍କର ଗୋଟିଏ ଝୁଙ୍କ ଉଠିଲା ହାତୀର ଓଜନ ବାହାର କରିବା ପାଇଁ । ନଗଦ ପୁରସ୍କାର ଘୋଷଣା କରାଗଲା । ହେଲେ ହାତୀ ଓଜନ କରିବ କିଏ ? ଦିନ ପରେ ଦିନ ବିତିଗଲା ସିନା ହାତୀ ଓଜନ ହେବା ନ ହେଲା । ଆର୍କିମିଡ଼ିସ ମଧ୍ୟ ଏ ଖବର ପାଇ ଚିନ୍ତା କରୁଥାଆନ୍ତି । ଦିନେ ସେ ଅନ୍ୟ ମନସ୍କ ଭାବରେ ଗାଧୋଇବା ପାଇଁ ଗାଧୁଆକୁଣ୍ଡ ଭିତରକୁ ପଶିଗଲେ । କ'ଣ ଦେଖିଲେ କେଜାଣି ପାଗଳଙ୍କ ପରି ରାଜ ନଅର ପର୍ଯ୍ୟନ୍ତ ରାସ୍ତାସାରା "ପାଇଗଲି ପାଇଗଲି" (ୟୁରେକା) କହି କହି ଦଉଡ଼ିଲେ । ଦେହସାରା ଓଦା ଜୁବୁ ଜୁବୁ । ଲୁଗାପଟା ଫିଙ୍ଗି ଅସ୍ତ ବ୍ୟସ୍ତ । ସମ୍ରାଟଙ୍କୁ ହାତୀଟି ନଈ-

କୂଳକୁ ନେବାକୁ କହିଲେ । ସେଥି ପାଣି ଉପରେ ବଡ ଡଙ୍ଗା ରଖାଗଲା । ଖାଲି ଡଙ୍ଗାଟି ପାଣି ଉପରେ ଥିବା ବେଳେ ତା ଦେହରେ ଗୋଟିଏ ଦାଗ ଦିଆଗଲା । ପୁଣି ହାତୀଟିକୁ ଡଙ୍ଗା ଉପରେ ଚଢ଼ାଇ ଦିଆଗଲା । ଫଳରେ ଡଙ୍ଗାଟିର ଅଧିକ ଅଂଶ ପାଣିରେ ବୁଡ଼ିଗଲା । ଡଙ୍ଗା ଦେହକୁ ଲାଗିଥିବା ପାଣିର ଉପରେ ଅଂଶରେ 'ଆଉ ଗୋଟିଏ ଦାଗ ଦିଆଗଲା' । ତାପରେ ହାତୀକୁ ଡଙ୍ଗାରୁ ଓହ୍ଲାଇ ନିଆଯାଇ ଡଙ୍ଗାଟିରେ ବାଲିବସ୍ତା ସବୁ ଥାକ ଥାକ କରି ଲଦି ଦିଆଗଲା ଯେପରି ପୁଣି ଡଙ୍ଗାଟି ଦ୍ୱିତୀୟ ଥର ଦିଆଯାଇଥିବା ଦାଗ ପର୍ଯ୍ୟନ୍ତ ବୁଡ଼ିଯାଏ । ଏହି ବାଲି ବସ୍ତା-ଗୁଡ଼ିକର ଓଜନ ହାତୀର ଓଜନ ସହିତ ସମାନ ଥିବାର ପାରେ ବୈଜ୍ଞାନିକ ପ୍ରମାଣ କରି ଦେଖାଇ ଦେଲେ ।




ଖାଲି ଡଙ୍ଗା




ହାତୀ ସହ ଡଙ୍ଗା

ସମସ୍ତେ ଆଶ୍ଚର୍ଯ୍ୟ ହୋଇ ରହିଁ ରହିଲେ । ସେଇ ଦିନଠାରୁ ତାଙ୍କୁ ପାଗଳା ବୋଲି କେହି ଡ଼ାକଲେ ନାହିଁ ।

ପ୍ରକୃତରେ ଆର୍କିମିଡ଼ସଙ୍କ ଗାଧୁଆ କୁଣ୍ଡରୁ ପାଇଥିବା ତଥ୍ୟ କଅଣ ? ଏହାର ଆର୍କିମିଡ଼ସଙ୍କ ତଥ୍ୟ ବା ଭାସମାନ ପଦାର୍ଥ ମାନଙ୍କ ତଥ୍ୟ ଆର୍କିମିଡ଼ସ ଗାଧୁଆ କୁଣ୍ଡରେ ପଶିବାବେଳେ କିଛି ପାଣି କୁଣ୍ଡରୁ ଉଚ୍ଛୁଳି ବାହାରକୁ ବହିଗଲା । ଏଇ ସାମାନ୍ୟ କଥାରୁ ସେ ଅନେକ ଅସାମାନ୍ୟ ତଥ୍ୟରୁ ସୃଷ୍ଟି କରିଗଲେ । ତାଙ୍କ ଭାବିବା ଅନୁସାରେ ଯେଉଁ ପଦାର୍ଥ ପାଣିରେ ପକାଇଲେ ତା ନିଜ ଓଜନଠାରୁ ଅଧିକ ବା ସେତିକି ଓଜନର ପାଣି ବାହାରକୁ ଉଚ୍ଛୁଳି ପଡ଼ିଥାଏ, ତାହା ସୁବିଧାରେ ପାଣିରେ ଭାସିପାରେ । ନିଜ ଓଜନଠାରୁ କମ୍ ଓଜନର ପାଣି ବାହାରକୁ ବାହାର କରି ନ ପାରିଲେ ଜିନିଷଟି ସାଙ୍ଗେ ସାଙ୍ଗେ ବୁଡ଼ିଯାଏ । ଆର୍କିମିଡ଼ସଙ୍କ ସୂତ୍ର ଅନୁସାରେ ବଡ଼ ବଡ଼ ଜାହାଜମାନ ତିଆରି କରାଯାଇ ସମୁଦ୍ରରେ ବାଣିଜ୍ୟ କରନ୍ତି । ସେଇଭଳି ଡ଼ଙ୍ଗାଟିଏ ପାଣିରେ ଭାସିଚାଲେ ବେଳେ ଛୁଞ୍ଚିଟିଏ, ଗୋଲିଟିଏ ବୁଡ଼ିଯାଇଥାଏ ।

ଏଥର ବୁଝିଲ ପିଲାଏ ହଜାର ହଜାର ମହଣ ଜିନିଷ ମଧ୍ୟ ମାତ୍ର ପରି ଓଜନ କରାଯାଇପାରିବ ।

***

# ଉପରୁ ଖସିଲା ଫଳ

ଧନସାର୍ ମାମିନା କୋଠା ଉପରେ ବସି ଗୁଡ଼ି ଉଡ଼ାଇବାରେ ବ୍ୟସ୍ତ । ଚାରିଆଡ଼େ ଆକାଶରେ ରଙ୍ଗ ରଙ୍ଗିଆ ଗୁଡ଼ି ଲଞ୍ଜ ହଲାଇ ଫରଫର ହୋଇ ଉଡ଼ିବାରେ ବ୍ୟସ୍ତ । କେହି କେହି ଅନ୍ୟର ଗୁଡ଼ି କାଟିବାକୁ ଚେଷ୍ଟା କରୁଥାଆନ୍ତି । ଏହିଭଳି ମାମିନା ଗୁଡ଼ି ଉଡ଼ାଉଥିଲା ବେଳେ ଦେଖିଲା ବହୁତ ଦୂରରୁ ଦୁଇଟି ବଡ଼ ଲେଉଣପୁ ଗୁଡ଼ି ତାଙ୍କ ଛାତ ଉପରକୁ ଉଡ଼ି ଆସୁଛନ୍ତି । ହଠାତ୍ ଗୋଟିଏ ଗୁଡ଼ି ତା ମୁଣ୍ଡ ଉପରେ ଖସି ପଡ଼ିଲା । ଗୁଡ଼ିଟି କାଗଜରେ ତିଆରି । ଏତେ ହାଲୁକା ହୋଇ ମଧ୍ୟ ଆକାଶରୁ ତଳେ ଖସି ପଡ଼ିଲା । ହାଲୁକା ଜିନିଷ ପବନରେ ଉପରକୁ ଉଡ଼ି ଉଡ଼ି ଯାଆନ୍ତା ସିନା ତଳକୁ ଖସି ପଡ଼ିଲା କାହିଁକି ? ସେଦିନ ଆମ୍ବ ଗଛରୁ ଟପ୍‌ଟପ୍ ହୋଇ ଆମ୍ବଗୁଡ଼ାକ ଝଡ଼ିପଡ଼ିଲା, କୁଆ-ପଥର ମଧ୍ୟ ଆକାଶରୁ ତଳକୁ ଖସିପଡ଼ିବାର ସେ ଦେଖିଥିଲା, ବିଦ୍ୟା-ଳୟରେ ଖେଳୁଥିବା ଚେଣ୍ଡୁକୁ ଯେତେ ଥର ଉପରକୁ ଫୋପାଡ଼ିଲେ ମଧ୍ୟ ପ୍ରତିଥର ତଳକୁ ଖସି ପଡ଼େ । ଏ ସବୁର କାରଣ କ'ଣ ? ତା'ଠିକ ମୁଣ୍ଡରେ ଏଗୁଡ଼ିକ ପଶୁ ନଥାଏ । ଏହି ସମୟରେ ବଡ଼ଭାଇ କଲେଜରୁ ପାଠପଢ଼ା ସାରି ଘରକୁ ଫେରି ଥାଆନ୍ତି । ମାମିନା ଭାଇଙ୍କୁ ନିଜର ସନ୍ଦେହ ବିଷୟରେ ପଚାରିଲା । ଭାଇ ଟିକିଏ ଚିନ୍ତା କରି କହିଲେ — ଅଚ୍ଛା ତୁ ଆସ, ଜଳଖିଆ ଖାଇବୁ, ଧନସାର୍ କହୁ ନ ଖାଇ ଗୁଡ଼ି

ଉଡ଼ାଉଥିଲୁ । ମୁଁ ତତେ ଏବେ ବିଷୟ ଖୁବ୍ ସହଜ ଉପାୟରେ
ବୁଝାଇଦେବି । ଭାଇଭଉଣୀ ଖୁସିରେ ତଳକୁ ଓହ୍ଲାଇଲେ ଜଳଖିଆ
ଖାଇବା ପାଇଁ, ଖାଉ ଖାଉ ଭାଇ ପଚାରିଲେ "ଅଚ୍ଛା- ମାମିନା, ତୁ
ଆଜ ଗୁଡ଼ି ଉଡାଉଥିଲୁ ନା, ତୋ ଗୁଡ଼ିରେ ଗୋଟିଏ ସୂତା ଲଗାଯାଇ
ତାହାର ଅନ୍ୟ ମୁଣ୍ଡ ଲଟାଇରେ ଗୁଡ଼ାଯାଇଥିଲା, ତୁ ଲଟେଇଧରି
ତଳକୁ ଟାଣୁଥିଲୁ । ଗୁଡ଼ିଟିକୁ ପବନ ଉପରକୁ ଉଡ଼ାଇ ନେବାକୁ ଚାହୁଁ-
ଥିବା ବେଳେ ତୁ ଲଟେଇକୁ ତଳକୁ ଟାଣି ଗୁଡ଼ିକୁ ତଳକୁ ଖସାଉଥିଲୁ ।
ତୋର ବଳ ଥିବାରୁ ଗୁଡ଼ିଟିକୁ ତଳକୁ ଟାଣି ଆଣୁଥିଲୁ । ସେହିପରି
ପ୍ରତ୍ୟେକ ବସ୍ତୁର କିଛି କିଛି ବଳ ଅଛି । ଆମ ପୃଥିବୀର ମଧ୍ୟ କିଛି
ବଳ ଅଛି । ଯାହାଦ୍ୱାରା ସେ ଅନ୍ୟମାନଙ୍କୁ ତଳକୁ ଟାଣିପାରେ ।
ପୃଥିବୀର ଏହି ବଳ ଥିବାରୁ ଗୁଡ଼ିଟି ଉପର ଶୂନ୍ୟ ଆକାଶକୁ ଉଡ଼ି ନ
ଯାଇ ତଳେ ପଡ଼ିଲେ, ପେଣ୍ଡୁଟି ମଧ୍ୟ ଆକାଶରେ ମିଳେଇ ନ ଯାଇ
ଭୂଇଁରେ ପଡ଼ିଲେ । ଠିକ୍ ସେହିପରି ଗଛରୁ ଖସୁଥିବା ଫଳ ଉପରକୁ
ନ ଯାଇ ଗଛ ମୂଳରେ ଖସିପଡ଼େ । ଏହା ପୃଥିବୀର ଆକର୍ଷଣ ଶକ୍ତି ଓ
ମାଧ୍ୟାକର୍ଷଣ ଶକ୍ତି । ପୃଥିବୀ ଭଳି ସୂର୍ଯ୍ୟ ଚନ୍ଦ୍ର, ତାରା ପ୍ରତ୍ୟେକଙ୍କର
କିଛି କିଛି ଆକର୍ଷଣ ବଳ ଅଛି । ସୂର୍ଯ୍ୟଙ୍କର ଆକର୍ଷଣ ବଳ
ଅନ୍ୟମାନଙ୍କ ଠାରୁ ଢ଼େର ବେଶୀ ହେବାରୁ ସେ ଗ୍ରହ, ଉପଗ୍ରହମାନଙ୍କୁ
ନିଜ ଚାରିପଟେ ବୁଲାନ୍ତି । ସୂର୍ଯ୍ୟଙ୍କ ଆକର୍ଷଣ ବଳକୁ ମହାକର୍ଷଣ
ବଳ କୁହାଯାଏ । ସୂର୍ଯ୍ୟ ନିଜେ ବେଙ୍ଗଳାର ମେଢ଼ି ପରି ମଝିରେ
ରହନ୍ତି ଓ ମେଢ଼ି ଚାରି ପଟେ ଗ୍ରହ, ଉପଗ୍ରହମାନେ ବଳଦ ପରି
ଗୋଟିଏ ଦିଗରୁ ଅନ୍ୟ ଦିଗକୁ ବୁଲୁଥାଆନ୍ତି ।

ପୃଥିବୀର ଆକର୍ଷଣ ଶକ୍ତି ଥିବାର ପ୍ରମାଣ ପ୍ରଥମେ ଆମ ପାଖରେ
ପହଞ୍ଚାଇଥିଲେ ବୈଜ୍ଞାନିକ ସାର ଆଇଜାକ୍ ନିଉଟନ୍ । ନିଉଟନଙ୍କ
ବିଷୟରେ ଗୋଟିଏ ମଜା ଗପ ଅଛି । ଦିନେ ଖରାବେଳେ ସେ ତାଙ୍କ
ବଗିଚାରେ ଗୋଟିଏ ଆତ ଗଛ ମୂଳରେ ବସିଥିଲେ । ସେ ଶୂନ୍ୟକୁ



ଅନାଇ କିଛି ଚିନ୍ତା କରିବାରେ ବ୍ୟସ୍ତ ଥିଲେ । ଏହି ସମୟରେ ଗୋଟିଏ ପାଚିଲା ଆତ ତାଙ୍କ ମୁଣ୍ଡ ଉପରେ ଦୁମ୍‌କିନା ଖସିପଡ଼ିଲା । ନିଉଟନଙ୍କ ଚେତା ଆସିଗଲା । ଆତଟି ଗଛରୁ କିଏ ତାଙ୍କ ମୁଣ୍ଡ ଉପରେ ପକାଇଲା । ସେ ଚନ ଚନ କରି ଚାରିପାଖ ଖୋଜିଗଲେ । କେହି ନଥିବାର ଦେଖି ଚିନ୍ତା କଲେ ଆତଟିକୁ ତଳକୁ ଟାଣିଲା କିଏ । ସେ ଗୋଟିଏ ଆତ ଛିଣ୍ଡାଇ ଥରକୁ ଥର ତାକୁ ଖୁବ୍ ଜୋରରେ ଉପରକୁ ଫିଙ୍ଗିଲେ, କିନ୍ତୁ ପ୍ରତ୍ୟେକ ଥର ସେ ଏକା କଥା । ଆତଟି ଉପରେ ଅଟକି ନ ଯାଇ ତଳକୁ ଖସି ଆସୁଛି । ନିଉଟନ ଜଣେ ଉଚ୍ଚକୋଟୀର ବୁଦ୍ଧିମାନ ଲୋକ, ସେ ସେହି ଦିନଠାରୁ ଗବେଷଣା କରି ପୃଥିବୀର ଥିବା ଅଦୃଶ୍ୟ ଶକ୍ତି ଆବିଷ୍କାର କଲେ ।

ଏବେ ବୁଝିପାରିଲୁ ତ, ଶୂନ୍ୟର କେମିତି ଖସିଲା ଫଳ, ଫୁଲ, ହାତ ଧୋଇବା ।



# ଭୁଟି ଷଣ୍ଢର କାମ କଲେ

ମଣିଷ ବଞ୍ଚି ରହିବା ପାଇଁ କେତେକ ପଦାର୍ଥ ନିହାତି ଦରକାର । ପେଟକୁ ମୁଠାଏ ଦାନା ଓ ପିଠିକୁ ଖଣ୍ଡିଏ କନା ନ ହେଲେ କେହି ଚଳି ପାରିବେ ନାହିଁ । ପେଟକୁ ଦାନା ନ ଗଲେ ଅନ୍ତ ବେଶୀରେ ଦୁଇ ଓଳି ଜଣେ ରହିପାରେ । ତାପରେ ଉଠିବା, ବସିବା କାମ କରିବାକୁ ଜୋର ପାଇବ ନାହିଁ । ଭୁଟ୍ଟିଁ ଭୁଟ୍ଟିଁ ବେଗ ମାଡ଼ି ବସିବ । କିଛି ଦିନ ପରେ ଯମ ଡାକିନେବ । ମଣିଷ ଭଳି ଅନ୍ୟ ପ୍ରାଣୀ ଓ ଗଛଲତା ମଧ ନ ଖାଇଲେ ବଞ୍ଚି ପାରିବେ ନାହିଁ । ତୁମେ ଦେଖିଥିବ ଖରା ହେଲେ ମାଟି ଶୁଖିଯାଇ ଗଛଲତା ଗୁଡ଼ିକ ଧିରେ ଧିରେ ଶୁଖିଆନ୍ତି । କାରଣ ସେମାନଙ୍କୁ ଖାଦ୍ୟର ଅଭାବ ହୁଏ । ଆମଭଳି ଗଛର ତ ପାଟି କି ଦାନ୍ତ ନାହିଁ ଖାଦ୍ୟ ଚୋବାଇ ଖାଇବା ପାଇଁ ସେ ତାର ଖାଦ୍ୟକୁ ପାଣିରେ ଗୋଳାଇ ଶୋଷି ନେଇଥାଏ । କେତେକ ପକ୍ଷୀ, ପଶୁ ଖାଦ୍ୟକୁ ସିଧାସଳଖ ଗିଳି ଦିଅନ୍ତି । ଗାଈ, ଛେଳି, ମେଣ୍ଢା କ'ଣ କରନ୍ତି ? ସେମାନେ ତରବରରେ ଅଳ୍ପ ଚୋବାଇ ଖାଦ୍ୟକୁ ଗିଳି ଦିଅନ୍ତି ଏବଂ ସମୟ ମିଳିଲେ ପୁଣି ଥରେ ପେଟରୁ ବାହାର କରି ଭଲକରି ଚୋବାଇ ଖାଆନ୍ତି । ବଗ ମାଛଟିଏ ଟପ୍‌କରି ଗିଳିଦିଏ । ସମସ୍ତଙ୍କର ଖାଦ୍ୟ ଓ ଖାଇବା ପ୍ରଣାଳୀ ଅଲଗା ଅଲଗା ।

ଆମେ ଖାଦ୍ୟ କାହିଁକି ଖାଇବା, ଖାଦ୍ୟ ଖାଇଲେ ଦେହରେ ବଳ ହୁଏ । ଦେହର ବୃଦ୍ଧି ହୋଇ ମଣିଷ ଓ ଅନ୍ୟାନ୍ୟ ଜୀବଜନ୍ତୁ ଛୁଆଟିରୁ ବଡ଼ଟିଏ ହୁଅନ୍ତି । ଖାଦ୍ୟ ଠିକ୍ ଖାଇଲେ ରୋଗ ସହଜରେ ଧରିପାରିବ ନାହିଁ । ଦେହର କୌଣସି ଅଂଶ କଟିଗଲେ ବା ଛିଣ୍ଡିଗଲେ



## ଫଳମୂଳ ଶସ୍ୟାଦି

କେବଳ ଏକେ ପ୍ରକାର ଖାଦ୍ୟକୁ ମନଇଚ୍ଛା ଖାଇଦେଲେ ଚଳିବ ନାହିଁ । କେଉଁ ପ୍ରକାର ଖାଦ୍ୟରୁ କେତେ ଦରକାର ତାହା ଆମେ ପ୍ରଥମେ ଜାଣିବା ଦରକାର । ଉପଯୁକ୍ତ ପରିମାଣ ଉତ୍ତମ ଖାଦ୍ୟକୁ ଏକଥ କରିଦେଲେ ତାହାକୁ ଆମେ "ସୁଷମ ଖାଦ୍ୟ" ବୋଲି କହୁ-ଥାଉ । ପୁଣି ଆମ ଭିତରେ ଅନେକ ଲୋକ ଅଛନ୍ତି ଯେଉଁମାନେ ମାଛ, ମାଂସ ଖାଇବାକୁ ଭଲ ପାଆନ୍ତି ନାହିଁ, ସେମାନଙ୍କୁ ନିରାମିଷାଶି କୁହାଯାଏ । ସେମାନଙ୍କର ସୁଷମ ଖାଦ୍ୟ ତାଲିକା ଆମିଷାଶିମାନଙ୍କଠାରୁ ଅଲଗା ।

ବୟସ ଅନୁସାରେ ଖାଦ୍ୟର ପରିମାଣ ମଧ୍ୟ ବଦଳିଯାଏ । ଗୋଟିଏ ୧୦-୧୨ ବର୍ଷର ପିଲାପାଇଁ ଦିନକୁ ଦରକାର ସୁଷମ ଖାଦ୍ୟର ତାଲିକାଟିଏ ଦିଆଗଲା ତାହାକୁ ଭଲରେ ବୁଝି ନେଇ କାମରେ ଲଗାଅ ।

## ସୁଷମ ଖାଦ୍ୟ (ଗୋଟିଏ ଦିନ ପାଇଁ)

| ଖାଦ୍ୟ | ଆମିଷାଶୀ | ନିରାମିଷାଶୀ |
|---|---|---|
| ଚାଉଳ | ପ୍ରାୟ ୧୫୦ ଗ୍ରାମ | ପ୍ରାୟ ୧୫୦ ଗ୍ରାମ |
| ଅଟା | ୧୫୦ ଗ୍ରାମ | ୧୫୦ ଗ୍ରାମ |
| ଡାଲି | ୬୦ ଗ୍ରାମ | ୬୦ ଗ୍ରାମ |
| ପରିବା | ୧୩୦ ଗ୍ରାମ | ୧୦୦ ଗ୍ରାମ |
| ଶାଗ | ୫୦ ଗ୍ରାମ | ୭୫ ଗ୍ରାମ |
| ଫଳ | ୫୦ ଗ୍ରାମ | ୫୦ ଗ୍ରାମ |
| ଦୁଧ | ୩୦୦ ଗ୍ରାମ | ୨୫୦ ଗ୍ରାମ |
| ତେଲ | ୩୫ ଗ୍ରାମ | ୩୫ ଗ୍ରାମ |
| ମାଛ ବା ମାଂସ | ୭୦ ଗ୍ରାମ | — |
| ଅଣ୍ଡା | ୧ ଗୋଟି | — |

ଏବେ ଜାଣିଲ, କାହିଁକି ତୁମେ ସବୁ ଏତେ ରୋଗ ଭୋଗୁଛ, ଏଣିକି ବୁଦ୍ଧି ବଳର କାର୍ଯ୍ୟ କରିବାକୁ ଚେଷ୍ଟା କର, ନିଶ୍ଚୟ ସୁସ୍ଥ ସବଳ ବୁଦ୍ଧିମାନ ହେବ ।

***

# ବିପଦ ବେଳର ବନ୍ଧୁ ହିଁ
# ପ୍ରକୃତ ବନ୍ଧୁ

କାହିଁ କେତେ କୋଟିବର୍ଷ ତଳରୁ ଏଇ ପୃଥିବୀ ଜନ୍ମ ହେଲାଣି, ତା ଦେହରେ କେତେ ହଜାର ହଜାର ପ୍ରକାର ଜୀବ, ଜନ୍ତୁ, ଗଛଲତା ସବୁ ଧିରେ ଧିରେ ଜନ୍ମ ହୋଇଛନ୍ତି । ଆଜିକାଲି ସେମାନଙ୍କ ମଧ୍ୟରୁ ଅନେକ କୁଆଡ଼େ ଲୁଚି ଛପି ଗଲେଣି ଆଉ ଜଣାପଡ଼ୁ ନାହାନ୍ତି । ଆମେ ସବୁ ଶିକ୍ଷିତ ପିଲାଏ ଯାହା ପାଠ ବହିରୁ ପଢ଼ି ଜାଣିପାରୁଛେ ସେତିକି, କିନ୍ତୁ ଗୋଟିଏ ପ୍ରଶ୍ନ ମନରେ ଉଠେ—ଆମେ କାହିଁକି ଏକୁଟିଆ ଖେଳିବାକୁ ଭଲ ପାଉନା, ଅନେକ ସମୟରେ ତୁମ ସାଙ୍ଗସାଥି ମାନଙ୍କ ସହ ମନ ଫୁଲ ଫୁଲ ହୋଇ ତୁମେ କଟି ପକାଅ । ଯଦି ତୁମ ଶ୍ରେଣୀର ସବୁ ପିଲା ତୁମ ସହିତ କଟି କରି ଦିଅନ୍ତି, ତୁମେ ଦିନଟିଏ ଚଳିପାରିବ କି ? ନା—ହୋଇ ପାରିବ ନାହିଁ । କାରଣ ତୁମର ସବୁବେଳେ ସାଙ୍ଗଟିଏ ଦରକାର । ସାଙ୍ଗଟିଏ ନଥିଲେ ଖେଳିବା, ବୁଲିବାରେ ମଜା ନ ଥାଏ ଆଚ୍ଛା ପିଲାଏ ତୁମର ସବୁ ସାଙ୍ଗମାନଙ୍କୁ ତୁମେ ଜାଣ କି ? ହଁ, ତୁମ ସ୍ୱଭାବରେ ତୁମ ସାଙ୍ଗମାନେ ତୁମ ସହିତ ଖେଳନ୍ତି, ବୁଲନ୍ତି, ପାଠ ପଢ଼ନ୍ତି ଇତ୍ୟାଦି । ସେମାନେ ତୁମରି ପରି ଶିକ୍ଷିତ ପିଲା କହିଲ ଦେଖି— କେବଳ ମଣିଷମାନଙ୍କ ସହିତ ତୁମେ ଚଳ କି ? ଘରେ ଥିବା ବିରାଡ଼ି, କୁକୁର, ଗାଈ, ମେଣ୍ଢା, ଶୁଆ ସାଥୀ ତୁମକୁ କେମିତି ଲାଗନ୍ତି । ସେମାନେ

ମଧ୍ୟ ମଣିରେ ବନ୍ତି, ସେମାନଙ୍କୁ ଆମେ ପ୍ରାଣୀ ବା ଜୀବଜନ୍ତୁ ବୋଲି କହୁଥାଉ, ଯଦି ଏମାନେ ମଣିରେ ବନ୍ତି ଭଲ ହୋଇ ନ ଥାନ୍ତେ ତେବେ ନନ୍ଦନକାନନର ଜୀବଜନ୍ତୁଙ୍କୁ ଦେଖିବା ପାଇଁ ଆମ ଆଗ୍ରହ ନ ଥାନ୍ତା । କୋଇଲିର ଗୀତ ଶୁଆର କଥା ଶୁଣିବାକୁ ଭଲ ଲାଗନ୍ତା ନାହିଁ । ଏ ତ ଗଲେ ଜଣାଶୁଣା ବନ୍ତି ମାନଙ୍କ କଥା । ଏମାନଙ୍କ ବ୍ୟତୀତ ମଣିରେ ଆହୁରି ଅନେକ ଜୀବକୋଷ ବନ୍ତି ଅଛନ୍ତି । ସେମାନେ ଏକ ପ୍ରକାର ଶାନ୍ତ ବସ୍ତୁ ହୋଇ ମଧ୍ୟ କଥା କହି ପାରନ୍ତି ନାହିଁ କି କୌଣସି ପ୍ରକାର ଶବ୍ଦ କରିପାରନ୍ତି ନାହିଁ । ଦେଖି ଥରେ ତୁମ ଗୃହପାର୍ଶ୍ବକୁ ଚାହିଁଲ, ଆଖି ଆଗରେ ଦେଖ ରହିଥିବା ସବୁଜ ଗଛ ଲତା ଗୁଳ୍ମଙ୍କ ମଧ୍ୟ ଆମରି ଭଳି ଜୀବକୋଷ ବନ୍ତି । ସେମାନେ ଆମରି ଏତେ ଉପକାର କରୁଛନ୍ତି ଯେ କଥାରେ କହିହେବ ନାହିଁ । ଆସ, ଥରୁଟିଏ ପ୍ରକୃତି କୋଳରେ ବୁଲି ଆସି ଏଇ ଜୀବକୋଷ ବନ୍ତି ମାନଙ୍କ ସମ୍ବନ୍ଧରେ କିଛି ଧାରଣା କରିନେବା । ଗଛଲତା ପ୍ରଭୃତିଙ୍କୁ ଆମେ ଉଦ୍ଭିଦ ବୋଲି ନାଆଁ ଦେଇଥାଉ । ଉଦ୍ଭିଦ ମଧ୍ୟ ବିଭିନ୍ନ ପ୍ରକାରର, ସାଧାରଣତଃ ଉଚ୍ଚ ଶ୍ରେଣୀର ଉଦ୍ଭିଦ ଓ ନିମ୍ନ ଶ୍ରେଣୀର ଉଦ୍ଭିଦ ।

ଏଇ ଉଦ୍ଭିଦ ମାନଙ୍କର ଦେହର ଗଠନ, ଆକାର, ଖାଦ୍ୟ ପ୍ରଭୃତି ଆମଠାରୁ ସମ୍ପୂର୍ଣ୍ଣଭାବେ ପୃଥକ । ପ୍ରାୟ ଅଧିକାଂଶ ଉଦ୍ଭିଦର ଜନ୍ମ ମଞ୍ଜିରୁ । ଯଦିଓ କେତେକ ନିମ୍ନ ଶ୍ରେଣୀର ଉଦ୍ଭିଦର ମଞ୍ଜି ନ ଥାଏ । ମଞ୍ଜିଟିଏ ନେଇ ଯେ କୌଣସି ସ୍ଥାନରେ ପିଙ୍ଗିଦେଇ ବୁଲି ଆସିଲେ ଗଛ ବାହାରିବ ନାହିଁ ।

ମଞ୍ଜିରୁ ପ୍ରଥମେ ଗୋଟିଏ ହୁଏ ଓ ଗଜା କ୍ରମେ ବଢିବଢି ବିରାଟ ଗଛଲତାରେ ରୂପାନ୍ତରିତ ହୋଇଥାଏ । ମଞ୍ଜିରୁ ଗଜା ବାହାରିବା କ୍ରିୟାକୁ ଅଙ୍କୁରୋଦ୍ଗମ କୁହାଯାଏ । ଏଥିପାଇଁ ତିନୋଟି ଜିନିଷ ପ୍ରଧାନତଃ ଲୋଡ଼ା—ଜଳ, ବାୟୁ ଓ ଉତ୍ତାପ ଏଥିରୁ ଗୋଟିକରେ ଅଭାବରେ ମଞ୍ଜିରୁ ଗଜା ହୁଏ ନାହିଁ । ଚେଷ୍ଟ କର ବୁଝିହେବ ଏତେ

ଯତ୍ନ କରି ବଢ଼ନ୍ତ (ମଞ୍ଜି ବୁଝିଥାଏ । ଆମେ ଗୋଟିଏ ଅତି ସରଳ ପରୀକ୍ଷା କରି ଅଙ୍କୁରୋଦ୍‌ଗମ ବିଷୟ ବୁଝିପାରିବା ।




(ଅଙ୍କୁରୋଦ୍‌ଗମ ପରୀକ୍ଷା)

ଗୋଟିଏ କାଚପାତ୍ର (ବିକର)ରେ ଅଧା ପର୍ଯ୍ୟନ୍ତ ପାଣି ନିଅ । ଖଣ୍ଡିଏ ପତଳା ଓ ସରୁ କାଠପଟାରେ ପ୍ରାୟ ୫ ସେ.ମି. ଦୂରତାରେ ତିନିଗୋଟି ମଟର ଦାନା ଲଗାଇ ବିକରରେ ବୁଡ଼ାଇ ରଖ, ଯେପରି ଉପର ଦାନା ପୁରା ପୁରି ପାଣି ଉପରେ ରହିବ । ମଝି ଦାନାଟିର ଅଧାଅଧି ପାଣିରେ ବୁଡ଼ିରହିବ ଏବଂ ତୃତୀୟ ମଞ୍ଜିଟି ପୁରାପୁରି ପାଣି ଭିତରେ ବୁଡ଼ି ରହିବ । ପାତ୍ରଟିକୁ ଭଲରେ ଆଲୁଅ ପଡୁଥିବା ଜାଗାରେ ରଖ । କିଛି ଦିନ ପରେ ଦେଖାଯିବ ଯେ ମଞ୍ଜି ଦାନାଟିରୁ ସୁନ୍ଦର ଗଛଟିଏ ବାହାରି ଆସିଛି । ଉପର ତଳ ଦାନାରୁ ଗଛ ବାହାରୁନାହିଁ ।

ଏହି ପରୀକ୍ଷାରୁ କ'ଣ ଜଣାପଡୁଅଛି । ସବା ଉପରେ ଥିବା ମଞ୍ଜିଟି ଯଥେଷ୍ଟ ବାୟୁ ଉତ୍ତାପ ପାଉଛି କିନ୍ତୁ ଜଳ ପାଉନାହିଁ । ସବା ତଳଟି ଜଳ ଓ କିଛି ବାୟୁ ପାଇବାକୁ ସକ୍ଷମ ହୋଇପାରିଥିଲେ ଉତ୍ତାପ

ଜମାରୁ ପାଇପାରୁ ନାହିଁ, କେବଳ ମଟିରେ ଥିବା ମଞ୍ଜିଟି ଜଳ, ବାୟୁ ଓ ଉତ୍ତାପ ସବୁ ଠିକ୍ ପରିମାଣରେ ପାଇଥିବାରୁ ଗଜା ବାହାରିଅଛି ।

ବେଳେ ବେଳେ ଅତ୍ୟଧିକ ବର୍ଷା ବା ଅତ୍ୟଧିକ ଖରା ହେବାରୁ ମଞ୍ଜିରୁ ଭଲ ଗଜା ଓ ଗଛ ହୁଏ ନାହିଁ । ସୁତରାଂ ଜଳ, ବାୟୁ ଓ ଉତ୍ତାପ ଠିକ୍ ପରିମାଣରେ ଦରକାର ।




ମଣିଷ ଶରୀର ପରି ଗଛର ଶରୀର ମଧ୍ୟ ବିଭିନ୍ନ ଅଙ୍ଗର ସମଷ୍ଟିରେ ତିଆରି । ମୁଖ୍ୟତଃ ଗଛର ଦୁଇଟି ପ୍ରଧାନ ଅଂଗ ଥାଏ ।

(କ) ମାଟିତଳେ ଥିବା ଅଂଗ ।

(ଖ) ମାଟିଉପରେ ଥିବା ଅଂଗ ।

ମାଟି ତଳେ ଥିବା ଅଂଶକୁ ମୂଳ ଓ ମାଟି ଉପରେ ଥିବା ଅଂଶକୁ କାଣ୍ଡ କୁହାଯାଏ । ଆମର ମେରୁଦଣ୍ଡ ପରି ଗଛର ଗଣ୍ଡି ବା କାଣ୍ଡ ଗଛକୁ ସିଧା ଓ ଶକ୍ତ ଭାବରେ ଧରି ରଖେ । କିନ୍ତୁ ଲତା ମାନଙ୍କର କାଣ୍ଡ ଦୁର୍ବଳ ଥିବାରୁ ସେମାନେ ଅନ୍ୟ ଉପରେ ମାଡ଼ିଥାଆନ୍ତି । କାଣ୍ଡରୁ ଶାଖା ବା ଡାଳ, ପତ୍ର ବାହାରି ଗଛକୁ ସୁନ୍ଦର କରିଥାଏ ।

## ଗଛ କ'ଣ ନିଶ୍ୱାସ ମାରେ ଓ ଖାଦ୍ୟ ଖାଏ ?

ପ୍ରାଣୀମାନେ ଖାଦ୍ୟ, ଜଳ ଓ ବାୟୁ ବିନା ବଞ୍ଚି ପାରନ୍ତି ନାହିଁ, ସେହିପରି ଗଛଲତା ମଧ୍ୟ ଖାଦ୍ୟ ଖାଆନ୍ତି ଓ ନିଶ୍ୱାସ ମାରନ୍ତି, ମଣିଷ ତାର ଖାଦ୍ୟ ଗ୍ରହଣ କରିବା ପାଇଁ ଗୋଟିଏ ପାଟିଟିଏ ଦରକାର କରେ । ନିଶ୍ୱାସ ନେବା ପାଇଁ ତା' ଦେହରେ ଶ୍ୱାସ ଯନ୍ତ୍ରଟିଏ ଈଶ୍ୱର ଦେଇଛନ୍ତି । କିନ୍ତୁ ଉଦ୍ଭିଦମାନଙ୍କର ଗୋଟେ ହେଲେ ପାଟି ନାହିଁ କି ଶ୍ୱାସ ଯନ୍ତ୍ର ନ ଥାଇ ମଧ୍ୟ ସେମାନେ ଖାଦ୍ୟ ଗ୍ରହଣ କରିବା ଓ ଶ୍ୱାସ-କ୍ରିୟା କରିବା ପାଇଁ ସମର୍ଥ, ଉକ୍ତ କାର୍ଯ୍ୟ ଉଦ୍ଭିଦର ପତ୍ରରେ ହୋଇଥାଏ, ସୁତରାଂ ପତ୍ରକୁ ଉଦ୍ଭିଦର ରୋଷେଇଘର ଓ ନାକ ବୋଲି କହିଲେ ଭୁଲ ହେବ ନାହିଁ ।

ଉଦ୍ଭିଦ ସାଧାରଣତଃ ଚେରଦ୍ୱାରା ମାଟିତଳୁ ତରଳ ପଦାର୍ଥ ସାର ପ୍ରଭୃତି ଗଣ୍ଡି ମଧ୍ୟରେ ଥିବା ଏକ ନଳୀ ଦ୍ୱାରା ପତ୍ରକୁ ଶୋଷି ନେଇ ଥାଆନ୍ତି, ଏହି ନଳୀର ନାମ ଜାଇଲମ । ଏହି ତରଳ ପଦାର୍ଥ ମାନ ପତ୍ରରେ ପହଞ୍ଚିବାପରେ ଗଛ ବାୟୁ ମଣ୍ଡଳରୁ ଅଙ୍ଗାରକାମ୍ଳ ବାଷ୍ପ ସୂର୍ଯ୍ୟଙ୍କଠାରୁ ଉତ୍ତାପ ନେଇ ଖାଦ୍ୟକୁ ବନ୍ଧଥାଏ । ଆମେ ଜାଳୁ-ଥିବା ଜାଳେଣୀ ପରି ସୂର୍ଯ୍ୟକିରଣ ଉଦ୍ଭିଦର ଜାଳେଣୀ । ଗଛ ନିଜ ପାଇଁ ଶ୍ୱେତସାର ଜାତୀୟ ଖାଦ୍ୟ ପ୍ରସ୍ତୁତ କରି ଶରୀରର ବଢ଼ନ୍ତା ଅଂଶକୁ ପଠାଇଦିଏ । ଗଛ କେବଳ ଦିନ ବେଳେ ଖାଦ୍ୟ ପ୍ରସ୍ତୁତ କରିଥାଏ । ରାତିରେ ସୂର୍ଯ୍ୟ କିରଣର ମିଳୁଥିବା ଉତ୍ତାପ ମିଳୁ ନ ଥିବାରୁ ତାର ରୋଷେଇ ବନ୍ଦ ଥାଏ । ଗୋଟିଏ ଖୁବ୍ ସହଜ ଉପାୟରେ ଆମେ ଏହା

ଜାଣିପାରିବା । ଖୁବ୍ ସକାଳୁ ଗଛରୁ ଗୋଟିଏ ଶାଗୁଆ ପତ୍ର ଛିଣ୍ଡାଇ ଆଣି ତାହାକୁ ଗୋଟିଏ ପାତ୍ରରେ ପାଣିନେଇ ଉଳଗଳରେ ସିଝାଇଦଅ, ପାଣିରୁ ପତ୍ରଟି ବାହାର କରି ଆଣି ସେଥିରେ କିଛି ଅୟୋଡ଼ିନ୍ ଦ୍ରବଣ ମିଶାଇ ଦଅ । ପାଣିର ରଙ୍ଗ ଗାଢ଼ ନୀଳ ହୋଇଯିବ । ଆୟୋଡ଼ିନ୍ ଶ୍ୱେତସାରକୁ ଗାଢ଼ନୀଳ ରଙ୍ଗରେ ପରିଣତ କରିଥାଏ । ସୁତରାଂ ଆମେ ଜାଣିଲେ ଯେଉଁ ପତ୍ରରେ ଗଛର ଖାଦ୍ୟ ଶ୍ୱେତସାର ରନ୍ଧା ଯାଇଥାଏ । ରନ୍ଧା ରନ୍ଧ ପାଇଁ ପତ୍ରର ସବୁଜ କଣିକା ସାହାଯ୍ୟ କରିଥାଆନ୍ତି ।



ଆସ ଗଛଲତା କପରି ନିଶ୍ୱାସ ମାରନ୍ତି ବୁଝିବା, ପତ୍ର ଭିତରେ ଅନେକ ଗୁଡ଼ିଏ ଛୋଟ ଛୋଟ ଛିଦ୍ର ଅଛି ଯାହା ଅଣୁବୀକ୍ଷଣ ଯନ୍ତ୍ରରେ ଦେଖାଯାଏ । ସେଇ ଛିଦ୍ରମାନ ନାକ ପୁଡ଼ାର କାମ କରନ୍ତି । ଆମପରି ଉଦ୍ଭିଦ ପତ୍ର ଦ୍ୱାରା ବାୟୁ ମଣ୍ଡଳରୁ ଅଙ୍ଗାରକାମ୍ଳ ବାଷ୍ପ ନେଇ ଅମ୍ଳଜାନ ବାଷ୍ପ ବାହାର ବାୟୁ ମଣ୍ଡଳକୁ ଛାଡ଼ି ଦେଇଥାଏ । ଏହା ଜାଣିବାପାଇଁ କିଛି ଟଙ୍କ ତ୍ରିଆଦଳ ପୋଖରୀରୁ ଦଳଟେକା ନେଇ ଆସ । ଦଳକୁ ଗୋଟିଏ କାଚ ପାତ୍ରରେ କିଛି ପାଣି ଉପରେ ରଖି ଗୋଟିଏ କାଚ ଫୁନେଲ ତାହା ଉପରେ ଓଲଟାଇ ରଖ, ଫୁନେଲ ନଳୀର ଖୋଲ

ମୁହଁରେ ପରୀକ୍ଷା ନଳୀଟିଏ ଓଲଟାଇ ରଖ । ତାହାପରେ ସବୁଗୁଡ଼ିକୁ ଗୋଟିଏ କାଚ ଢାଙ୍କୁଣି ଦ୍ୱାରା ଘୋଡାଇ ରଖିଦିଅ ।

କିଛି ସମୟ ପାଇଁ ଖରାରେ ରଖି ସାରିବା ପରେ ଘୋଡଣୀ ହଟାଇ ନିଅ । ପରୀକ୍ଷା ନଳୀର ଖୋଲା ମୁହଁରେ ହାତର ବୁଢା ଅଙ୍ଗୁଠି ଦ୍ୱାରା ବନ୍ଦ କରି ବାହାରକୁ ଆଣ ଗୋଟିଏ ଜଳନ୍ତା ଦିଆସିଲି କାଠି ତାର ମୁହଁ ପାଖରେ ଦେଖାଅ, ଅଙ୍ଗୁଠି କାଢି ଆଣିଲେ ଦେଖିବ ପରୀକ୍ଷା ନଳୀରେ ନିଆଁ ଜଳିଲା । ଏହା କେବଳ ଅମ୍ଳଜାନ ବାଷ୍ପ ଥିଲେ ସମ୍ଭବ ହୁଏ, ସୁତରାଂ ଉଦ୍ଭିଦ ନିଶ୍ୱାସ ମାରିବାରେ ପ୍ରମାଣ ମିଳିଲେ ।

## ଗଛଲତା ଆମର ବନ୍ଧୁ କିପରି —

ତୁମେ ସବୁ ସାହିତ୍ୟ ବହିରେ ପଢିଥିବ "ବନ୍ଧୁ ଚଳେ ଘୃତ ଓ ବନ୍ଧୁ ନଳେ ବାସ" ଲଭଡାସୂକ । ଅର୍ଥାତ୍ ବନ୍ଧୁଠାରୁ ଆମେ ଅନେକ ଉପକାର ପାଇଥାଉ ।

୧) ଆମେ ରହିବାପାଇଁ ଗ୍ରେଷ୍ଟହେଲେ ମଧ୍ୟ ସୁନ୍ଦର ଘରଟିଏ ଲୋଡ଼ା, ଘରର ଲାଗୁଥିବା ଦୁଆର, ଝରକା, ଟେବୁଲ, ଚଉକି ଆଦି ପାଇଁ ଦରକାରୀ କାଠ ଗଛ ଦିଏ, ପୁଣି ଗୁଳଘର ଛପର ପାଇଁ ଛଣ, ଲଇ ଡୋର ଉଦ୍ଭିଦ ଯୋଗାଇଥାଏ ।

୨) ଗଛ ନିଜ ପାଇଁ ତିଆରି କରିଥିବା ଶ୍ୱେତସାର ଚେର୍ରି, ପତ୍ର, ଫଳ ମୂଳରେ ସଞ୍ଚୟ କରିଥାଏ । ଆମେ ତାହା ଖାଉ । ଆଳୁ ଚେରର ମୂଳରେ ଥାଏ । ଶାଗ ଗଛର ପତ୍ର ଓ ମିଠା ମିଠା କମଳା, ପିଜୁଳି, ଆମ୍ବ ପ୍ରଭୃତି ଫଳ ଅଛନ୍ତି । ମିଠା ଫଳଟିଏ ପାଇଲେ କିଏ ଛାଡ଼ି ଦେବ ? ପେଟ ରୋଗମାନ ହେଲେ ଲେମ୍ବୁର ଦରକାର ପଡ଼ିଥାଏ ।

୩) ସବୁଠାରୁ ବଡ଼ କଥା ହେଲା ପୃଥିବୀର ପ୍ରାଣୀ ଜଗତ ଜନ୍ମ ନେଲା ଦିନଠାରୁ ବାୟୁ ମଣ୍ଡଳରୁ ଅମ୍ଳଜାନ ନେଇ ଅଙ୍ଗାରକାମ୍ଳ ବାଷ୍ପ ଛାଡ଼ି ଦେଉଛନ୍ତି । ଅଙ୍ଗାରକାମ୍ଳ ଏକ ବିଷାକ୍ତ ବାଷ୍ପ । ସୁତରାଂ ବାୟୁମଣ୍ଡଳରେ କେବଳ ଅଙ୍ଗାରକାମ୍ଳ ପୂରି ଯାଇଥାଆନ୍ତା ଓ ଅମ୍ଳଜାନ ଶେଷ ହୋଇଯାଆନ୍ତାଣି । ଅମ୍ଳଜାନ ଅଭାବରୁ ଆମେ ମୁହୂର୍ତ୍ତିଏ ମଧ୍ୟ ବଞ୍ଚି ପାରି ନଥାନ୍ତେ । କିନ୍ତୁ ଦିନକୁ ଦିନ ଆମ ସଂଖ୍ୟା ବଢିବାରେ ଏତେ ଅମ୍ଳଜାନ ଆମେ ପାଉ କେଉଁଠୁ ଓ ଏତେ ଅଙ୍ଗାରକାମ୍ଳ ଯାଏ କୁଆଡ଼େ, ଏଥିପାଇଁ ଉଦ୍ଭିଦ ଜଗତ ନିକଟରେ ଆମେ ଋଣୀ । ଉଦ୍ଭିଦ ବାୟୁ ମଣ୍ଡଳରୁ ଅଙ୍ଗାରକାମ୍ଳ ନେଇ ପରିଷ୍କାର ଅମ୍ଳଜାନ ଛାଡ଼ିଦିଏ ତେଣୁ ବାୟୁ ମଣ୍ଡଳରୁ ଅମ୍ଳଜାନ ପରିମାଣ କମିଯାଏ ନାହିଁ କି ପ୍ରାଣୀ ଜଗତ ଲୋପ ପାଉ ନାହିଁ । ଉଦ୍ଭିଦ ବାସ୍ତବିକ୍ ଆମକୁ ଜୀବନ ଦାନ କରୁଛନ୍ତି । ଏହା କ'ଣ କମ୍ ଉପକାର ?



(ଅଙ୍ଗାର ଚକ୍ର)

୪) ଆମେ ବହୁତ ସମୟରେ ଅସାଧ୍ୟ ରୋଗରେ ପଡ଼ି କଷ୍ଟ ଭୋଗିଥାଉ । ଏହି ସବୁ ଅସାଧ୍ୟ ରୋଗରୁ ମୁକୁଳିବାପାଇଁ ଆମକୁ

ଅନେକ ଔଷଧ ଦରକାର । ତୁମେ ଜାଣିଥିବ ଅଙ୍କୋଲ ପେନ୍‌ସିଲିନ୍ ନାମକ ଔଷଧ ବହୁଳ ଭାବରେ ରୋଗୀକୁ ଦିଆଯାଉଛି । ପେନ୍‌ସିଲିନ୍‌ର ଅନେକ ପ୍ରକାର ନାମ ଅଛି । ଏହି ପେନ୍‌ସିଲିନ୍ ଆମେ ପାଉ କେଉଁଠୁ ? ଶୁଣିଲେ ଆଶ୍ଚର୍ଯ୍ୟ ହେବ ଯାହା ଓ ଛତୁରୁ ପେନ୍‌ସିଲିନ୍ ତିଆରି ହୋଇଥାଏ । ତୁମର କାହୁ କୁଣ୍ଡିଆ ହେଲେ କେମ୍ପ ନେଇ ଟସ ଓ ତେଲକୁ ମିଶାଇ ବ୍ୟବହାର କରାଯାଏ । କ୍ଷତ ସ୍ଥାନରେ ବଲ୍ମୀକରଣୀ ପତର ରସ ଅବ୍ୟର୍ଥ ଔଷଧର କାମ କରେ ।

ବର୍ତ୍ତମାନ ବୁଝିଲ ତ ପିଲାଏ ଆମର ବଟଦ କେତେ ଦରକାରୀ ? ନିଶ୍ଚିତ ଭାବରେ ପ୍ରକୃତିରେ ଥିବା ଅମୂଲ୍ୟ ଗଛଲତା । ତେଣୁ ତୁମେମାନେ ଗଛଲତାକୁ ନଷ୍ଟ ନ କରି ସେମାନଙ୍କର ବଂଶ ବୃଦ୍ଧି ପାଇଁ ଚେଷ୍ଟା କର ।

ହେଉ ପିଲାଏ ତେର ଦେଖିଲଣି । ଏଥର ବେଳ ହୋଇଯାଉଛି, ପୁଣି କେବେ ନୂଆ ନୂଆ କଥା କହିବି ।

***

# ଆସିଲୁଣି କେତେଦୂର

## ଅଛି ଆଉ କେତେ......

ସମୟ ସ୍ରୋତ ସେକେଣ୍ଡରେ ଆଗକୁ ପାଦଟିଏ ମାତ୍ର ଯାଉଛି । ପଛକୁ ଫେରିବାର କୌଣସି ଉଦାହରଣ ଆମ ପାଖରେ ନାହିଁ କି ନଥିଲା । ତଥାପି ଏଇ ସମୟ କେବେ କେବେ ମୁହଁ ବୁଲାଇ ପଛକୁ ଟିକିଏ ଟିକିଏ ଚାହିଁଦେଲେ ଆମେ ଅନେକଙ୍କର ବୟସ ଅନ୍ତରର ମାଟି ପାଉଁଶ ଉଧା ଗାଡ଼ ଖୋଳି ବାହାର କରିବାକୁ ସମର୍ଥ ହୋଇଥାଉ । ଆଗକୁ ଚାଲି ଆସୁ ଆସୁ ସମୟର ବାଟରେ ଅନେକ ଅଲିଭା ଦାଗ ଲଗିଯାଏ—ଯାହାକି ମଣିଷର ଆଖି ଖୋଲିଦିଏ ।

ଆଜିର ମଣିଷ ଆଉ ଗତାନୁଗତିକ ଜୀବନ ପଥରେ ଚାଲିବାକୁ ବିଶେଷ ପସନ୍ଦ କରୁନାହିଁ । ତାର ଡେଣା କଅଁଳିଛି । ନୀଳ ଆକାଶ ବକ୍ଷରେ ଡେଣା ଝାଡ଼ି ସେ ଚନ୍ଦ୍ର, ମଙ୍ଗଳ, ବୃହସ୍ପତି ପ୍ରଭୃତି ଗ୍ରହ ଉପଗ୍ରହମାନଙ୍କୁ ଦଖଲ କରିବାକୁ ସମର୍ଥ । ଆଜି ବିଜ୍ଞାନ ବଳରେ ମଣିଷ ଧରିତ୍ରୀକୁ ସବୁ ମାଣି ବସିଛି । କିନ୍ତୁ ମହାକାଶର ଦୂରଦୂରାନ୍ତ ଗ୍ରହାନ୍ତରରେ ନିଜର ଆଧିପତ୍ୟ ବିସ୍ତାର କରିବା କଥା ନୂଆ ଭଳି ମନେ ହୁଏନା । ରାମାୟଣ ପୁରାଣ ଆଦିର ପୃଷ୍ଠାରେ ଏ ସବୁର ବହୁଳ ବର୍ଣ୍ଣନା ମିଳେ । ସୁତରାଂ ସେ ବିଜ୍ଞାନର ଯୁଗ କେବେଥିଲା ? ସେଇ ଯୁଗର ବୈଜ୍ଞାନିକମାନଙ୍କ ପାଖରେ କେଉଁଭଳି ଉନ୍ନତ ଯାନ ଯନ୍ତ୍ରପାତି ରହିଥିଲା ତାହାର ଠିକ୍ ପ୍ରମାଣ ଆଜି ମଧ୍ୟ ଦୁଷ୍ପ୍ରାପ୍ୟ । ମନେହୁଏ ସେ ଯୁଗ ଅନେକ ଅନେକ ଦୂର ଦିନର, ତେଣୁ ତାର ନାମ ବୋଧହୁଏ ଅନନ୍ତ ।

ଆଉ ଟିକିଏ ବିଶଦ ଭାବରେ ବିଚାର କଲେ ଜଣାପଡ଼େ, ମଣିଷ ଏକୋଶ ଏବେ ସବୁ ସଫଳ ବୈଜ୍ଞାନିକ ଯାତ୍ରାର ନାୟକ ନୁହେଁ । ପ୍ରଥମ ମହାକାଶଯାନରେ ଲାଇକା ନାମକ କୁକୁର ଦୂର ଆସିଥିଲା । ଅନ୍ୟ ପକ୍ଷରେ ମଣିଷ ନିଜର ରୋଗ ବ୍ୟାଧି ନିବାରଣ ପାଇଁ ପ୍ରସ୍ତୁତ କରୁଥିବା ଔଷଧପତ୍ର ପ୍ରଥମେ ମୂଷା ବା ଠେକୁଆଙ୍କ ଉପରେ ପରୀକ୍ଷା କରାଯାଇଥାଏ । ସୁତରାଂ ମଣିଷ ସମାଜ ସହିତ ଏଇ ନିମ୍ନସ୍ତରର ଜୀବଜନ୍ତୁ ସମାଜର ସମ୍ପର୍କ କେତେ ଗଭୀର ? ଏ ସମ୍ପର୍କର ମୂଳଭୂମି କେଉଁଠି ? ଏସବୁ ନିତାନ୍ତ ବିଚାର୍ଯ୍ୟ । ସମ୍ଭବତଃ ମଣିଷ ଜାତିର ଉତ୍ପତ୍ତି ଅନ୍ୟାନ୍ୟ ଜୀବଜନ୍ତୁଙ୍କ ଇତିହାସର ପରିପୂରକ ।

ବାହ୍ୟ ଗଠନକୁ ବିଚାରକୁ ନେଲେ, ମଣିଷହିଁ ସୃଷ୍ଟିର ସରସ, ସୁନ୍ଦର ଓ ସଭ୍ୟ ପ୍ରାଣୀ । ନିଜର ଜ୍ଞାନ ବିଜ୍ଞାନ ପ୍ରଭାବରେ ସିଏ ଜଗତର ପ୍ରଭୁ ହୋଇ ପାରିଛି । ହେଲେ କୁଆ, ବେଙ୍ଗ, ମୂଷା ସେଇ ମାଟିରେ ଜୀବ ହୋଇ ଭୂଇଁଚରେ ରହିପାରିଛନ୍ତି । ମୂଳତଃ କାହାର ଜାତିଗୋତ୍ର ସମାନ ନୁହେଁ । ତଥାପି ସମସ୍ତଙ୍କ ଜୀବନରେ ଅନ୍ତର୍ନିହିତ ସମ୍ପର୍କ ଆସେ କେଉଁଠୁ । ତେବେ ମଣିଷ ଲେଖିଛି ସବୁର ଇତିହାସ ତଥାପି ସେ ସ୍ୱୀକାର କରି ନେଇଛି "ଜୀବ ସୃଷ୍ଟି ହିଁ ମଣିଷ ସୃଷ୍ଟିର ପୂର୍ବ ପୁରୁଷ ବୋଲି" । ଏଥିରେ ଦ୍ୱିଧା ବୋଧ ନାହିଁ । ଏ ଉକ୍ତିଟିର ପୃଷ୍ଠଭୂମି ଜୀବନ୍ତ ଓ ଜ୍ୱଳନ୍ତ ପ୍ରମାଣ ଉପରେ ଅଧିଷ୍ଠିତ ।

ଯେଉଁ କେତେଜଣ ବୁଦ୍ଧିମାନ ବ୍ୟକ୍ତି ମଣିଷର ଜନ୍ମକୁ ଏ ଢଙ୍ଗରେ ପରିମାର୍ଜିତ, ପରିବର୍ଦ୍ଧିତ କରି ଏକ ନୂତନ ଦର୍ଶନ ଦେଇ ଆସିଛନ୍ତି, ସେଥିରୁ ସମସ୍ତଙ୍କର ଠାଁଠିକଣା ଆମ ପାଖରେ ନାହିଁ । ଅଳ୍ପ କେତେଜଣଙ୍କର ଲିଖିତ ପ୍ରମାଣ ଏବେ ବି ଆମେ ପାଇ ପାରୁଛୁ । ସେମାନଙ୍କ ମଧ୍ୟରେ ଅଷ୍ଟ୍ରେଲିଆର ଚାର୍ଲସ୍ ଡାରଉଇନ୍ ବିଶେଷ ପରିଚିତ ନାମ । ଡାରଉଇନ୍‌ଙ୍କ ଲିଖିତ **"ଜୀବସୃଷ୍ଟି ସମ୍ପର୍କରେ"** (୧୮୫୯) ପଢ଼ିଲେ ଜଣାପଡ଼େ "ମଣିଷ ଏକ ଜୀବ ମାତ୍ର, ଆଜିର ସଭ୍ୟ ଶିକ୍ଷିତ ସୁନ୍ଦର ମଣିଷ ସମାଜ ଅନେକ ଯୁଗ ପୂର୍ବେ ରହୁଥିବା ନିକୃଷ୍ଟତର ଜୀବ

ସମାଜର ଏକ ସରଳ ରୂପାନ୍ତର ମାତ୍ର ।" ସେହି ଯୁଗାନ୍ତକାରୀ ଲେଖାର ଅନ୍ୟ ଅଂଶରେ ଅଛି "ସଭ୍ୟ ମଣିଷ ସମାଜ ସୃଷ୍ଟିର କିଛି ସଫଳ ଇତିହାସ ଥାଏ ତାହାହିଁ ଅତୀତରେ ବିଲୁପ୍ତ ଜୀବର ଜୀବାଶ୍ମ ଶେଷ ମାତ୍ର ।" ଡାରୱଇନ୍‌ଙ୍କ ଉକ୍ତି ସମ୍ଭବତଃ ୧୮୫୬ ମସିହାରେ ନିଏଣ୍ଡାର ନଦୀ ଉପତ୍ୟକାରୁ ମିଳିଥିବା ଅପ୍ରାକୃତିକ ମଣିଷର ଖପୁରୀ ଉପରେ ପର୍ଯ୍ୟବସିତ । ଖପୁରୀଟିର ହନୁହାଡ଼, ଦାନ୍ତ, ଆଖିର ଗଠନ ଆଦି ମଣିଷର ଗଠନଠାରୁ ବହୁତ ଗୁଣ ବଡ଼ ଥିଲା । କିନ୍ତୁ ସେଇଦିନର ବୈଜ୍ଞାନିକମାନେ ଏହାର ଠିକଣା ପରୀକ୍ଷା କରିବାରେ ସଫଳ ହୋଇପାରି ନଥିଲେ । ମାତ୍ର ନିଏଣ୍ଡାର ନଦୀ ନାମାନୁସାରେ ଏହାକୁ "ନିଏଣ୍ଡାର୍ ଥେଲ୍ ମଣିଷ" ଭାବେ ନାମିତ କରିଦେଇଥିଲେ ।

ପରବର୍ତ୍ତୀ ସମୟରେ ବୈଜ୍ଞାନିକମାନେ ପରୀକ୍ଷା କରି ପ୍ରମାଣ କରି ଦେଖାଇ ଦେଲେ ଯେ, "ନିଏଣ୍ଡାର ଥେଲ୍ ମଣିଷ ହିଁ ସୃଷ୍ଟିର ଆଦିମମାନବ ଓ ଆମର ପୂର୍ବପୁରୁଷ" । ଜର୍ମାନ ଭାଷାରେ "ଥେଲ୍" ଶବ୍ଦର ଅର୍ଥ "ନଦୀ ଉପତ୍ୟକା" ।

ଉପଯୁକ୍ତ ପରିମାଣର ଜୀବାଶ୍ମ ଶେଷର ଅଭାବ ହେତୁ ଡାରୱଇନ୍ ଓ ସମସାମୟିକ ବୈଜ୍ଞାନିକମାନେ ମଣିଷକୁ ଏକ ଉଚ୍ଚଶ୍ରେଣୀର ସ୍ତନ୍ୟପାୟୀ ପ୍ରାଣୀଭାବେ ଗ୍ରହଣ କରି ନେଇଛନ୍ତି । ସେମାନଙ୍କ ମତବାଦ ଶାରୀରିକ ଗଠନ ଓ ବାହ୍ୟ ପ୍ରକୃତି ଉପରେ ଆଧାରିତ । ଲିନେକ୍ସ ନାମକ ଜଣେ ବୈଜ୍ଞାନିକ ଏ ଦିଗରେ ଅଗ୍ରଗଣ୍ୟ । ଶାରୀରିକ ଗଠନକୁ ମୂଳ ପ୍ରମାଣ ବୋଲି ଧରିନେଲେ ମଣିଷ ଓ ମାଙ୍କଡ଼ ଜାତୀୟ ପ୍ରାଣୀମାନଙ୍କ ମଧ୍ୟରେ ଅନେକ ସାମଞ୍ଜସ୍ୟ ଦେଖାଯାଏ । ବୋଧହୁଏ ଏଇଥିପାଇଁ ଆମେ ଅନେକ ସମୟରେ ମାଙ୍କୁଡ଼ଚାଳ, ମାଙ୍କଡ଼ାମି ପ୍ରଭୃତି ଶବ୍ଦର ପ୍ରୟୋଗ କରିଥାଉ ।

ଲିନେକ୍ସଙ୍କ ପୂର୍ବରୁ ମଣିଷର ଶ୍ରେଣୀବିଭାଗ ନେଇ ଭୁମୁଳ ବାଦାନୁବାଦ ଚାଲିଆସିଥିଲା । ସମସ୍ତଙ୍କ ମନରେ ଘୋର ସନ୍ଦେହର ଛାଇ ମାଡ଼ି ପଡ଼ିଥିଲା [?] । ପ୍ରକୃତରେ ମଣିଷ ଆଦିମ ଯୁଗର ନିମ୍ନ ସ୍ତରର ଏକ ମେରୁଦଣ୍ଡୀ ପ୍ରାଣୀ କିମ୍ବା ଉଚ୍ଚସ୍ତରର ସ୍ତନ୍ୟପାୟୀ ପ୍ରାଣୀର ଉତ୍ତର ପୁରୁଷ ।

ଜଡ଼ବସ୍ତୁ ମତବାଦ ସପକ୍ଷରେ ବୈଜ୍ଞାନିକମାନେ ଢେର ଯୁକ୍ତି ବାଢ଼ି ଚାଲି-
ଥିଲେ । ଉପଯୁକ୍ତ ପରୀକ୍ଷା ଉପଯୋଗୀ ଜୀବକୋଷ ଶେଷର ଅଭାବ ଯୋଗୁଁ
ଡାରଉଇନ୍, ଲିନେକ୍ସ ପ୍ରଭୃତି ବୈଜ୍ଞାନିକ କେବଳ ନିଜର କଳ୍ପନାକୁ ହିଁ
ମୂଳ ଭୂମିରୂପେ ଗ୍ରହଣ କରି ନେଇଥିଲେ ।

ସମ୍ପ୍ରତିମେ ବୈଜ୍ଞାନିକମାନେ ପୃଥିବୀର ଭିନ୍ନ ଭିନ୍ନ ସ୍ଥାନରୁ
ପୁରାତନ ସମୟର ପ୍ରାଣୀମାନଙ୍କର ହାଡ଼, ଦାନ୍ତ ଇତ୍ୟାଦିର ନମୁନା
ପାଇଥିଲେ ମାଟିତଳୁ । ସେ ସବୁର ଗଠନ ସହିତ ଅନ୍ୟାନ୍ୟ ପ୍ରାଣୀ ଶରୀରର
ଗଠନକୁ ତୁଳନା କରି ସେମାନେ ପାଇଥିଲେ ଅନେକ ସାମଞ୍ଜସ୍ୟ । ଆଜି
ମଣିଷର ହାତଗୋଡ଼ ଗଠନ ପରି ଅନୁରୂପ ଗଠନ ଥିବା କେତେକ
ସ୍ଥଳରେ ପ୍ରାଣୀର ଜୀବାବଶେଷ ମଧ୍ୟ ମିଳିଥିଲା । ଆମଭଳି ସେମାନଙ୍କର
ହାତ ପାପୁଲି ଓ ଗୋଡ଼ର ପାଦରେ ପାଞ୍ଚ ପାଞ୍ଚଟି କରି ଆଙ୍ଗୁଳି ଲାଗି
ରହିଥିଲା । ଆମ ଆଙ୍ଗୁଠିରେ ନଖଭଳି ସେମାନଙ୍କ ଆଙ୍ଗୁଳିରେ ମଧ୍ୟ
ଅନୁରୂପ ନଖ ଥିଲା । ଅନ୍ୟାନ୍ୟ କେତେକ ସାମଞ୍ଜସ୍ୟ ମଧ୍ୟରେ ଜାଙ୍ଘର
ହାଡ଼, ପାଟିର ପେଷଣ ଦାନ୍ତ ମୁଖ୍ୟତଃ ଆଖି ଆଗକୁ ଆସେ, କିନ୍ତୁ ଏତେ
ସାମଞ୍ଜସ୍ୟ ଥାଇ ମଧ୍ୟ ନଥିଲାଭଳି । ଆମଠାରେ ସେମାନଙ୍କର ଉନ୍ନତ ନାକ,
ମସ୍ତିଷ୍କ ଓ ସୁନ୍ଦର ଚନ୍ଦ୍ରମୁହିଁଟିଏ ନଥିଲା । ଚେପଟା ନାକ, ଅସ୍ୱାଭାବିକ
ଭାବରେ ବଡ଼ ହନୁହାଡ଼ ଓ ଅତ୍ୟନ୍ତ ଚଉଡ଼ା । କପାଳକୁ ନେଇ ସେଗୁଡ଼ିକ
ଥିଲେ ନିତାନ୍ତ କୁତ୍ସିତ କଦାକାର । ମସ୍ତିଷ୍କ ବୋଲି କୁହାଯାଉଥିବା ଅଂଶଟି
ଶରୀରର ଗଠନ ତୁଳନାରେ ଅସମ୍ଭବ ଭାବେ ବଡ଼ ଥିଲା । ଉଦାହରଣ
ସ୍ୱରୂପ କାମ୍ପୁଟିଅରୁ ମିଳିଥିବା ମାଙ୍କଡ଼ଜାତୀୟ ପ୍ରାଣୀର ଅବଶେଷକୁ
ଅନୁଧ୍ୟାନ କରି ଜଣାପଡ଼ିଛି ଯେ; ମସ୍ତିଷ୍କ ଶରୀରର ପ୍ରାୟ ପାଞ୍ଚଭାଗରୁ ଏକ-
ଭାଗ । ମାତ୍ର ଆମ ଶରୀରର ଶତକଡ଼ା ଦୁଇ ଶତାଂଶ ହିଁ ମସ୍ତିଷ୍କର
ଆକାର । ଅସ୍ୱାଭାବିକ ବିରାଟ ମସ୍ତିଷ୍କ ହିଁ ଜମା ଓ ଅନୁପଯୁକ୍ତ ଥିଲା ।
ଅଧିକନ୍ତୁ ଆଜି ମଧ୍ୟ ମଣିଷ ଓ ଗରିଲ ସିମ୍ପାଞ୍ଜିର ରକ୍ତକୁ ତୁଳନା କଲେ
ଆମେ ଦେଖୁ ମଣିଷ ରକ୍ତରେ ଅଧିକ ପରିମାଣର ଆମିନୋଏସିଡ଼ ।
ପରସ୍ପରଠାରୁ ପୃଥକ ଜଣା ପଡ଼ୁଥିଲେ ମଧ୍ୟ ବୈଜ୍ଞାନିକମାନେ ମତ ଦଅନ୍ତି,

"ଗତକାଳର ମଣିଷ ସମାଜର ଇତିହାସ ଓ ଗରିଲ୍, ସିମ୍ପାଞ୍ଜି ସମାଜର ଇତିହାସ ପରସ୍ପରର ଅନୁପୂରକ ଏବଂ ଉଭୟ ଶ୍ରେଣୀର ପ୍ରାଣୀଜଗତ ଏକଦା ଗୋଟିଏ ପୂର୍ବପୁରୁଷଠାରୁ ଜନ୍ମ ନେଇଥାଇ ପାରେ ।"

ବହୁ କଳ୍ପିତ ଓ ଆଲୋଚିତ ମଣିଷ ସମାଜର ଏକ ଧାରାବାହିକ ବିବରଣୀକୁ "ଜାଭା ମଣିଷର ଯୁଗ", "ପେକିଙ୍ଗ ମଣିଷର ଯୁଗ" ଓ "ମଙ୍ଗୋଲିୟ ମଣିଷର ଯୁଗ" ନାମରେ ନାମିତ କରାଯାଇଅଛି । ଏହି ସବୁ ସ୍ଥାନରୁ ମିଳିଥିବା ଅବଶେଷଗୁଡ଼ିକର ପରୀକ୍ଷାଲବ୍ଧ ଜ୍ଞାନହିଁ ପ୍ରକୃତ ପ୍ରମାଣ ସ୍ୱରୂପ ଗୃହୀତ ।

୧୮୮୯ ଖ୍ରୀଷ୍ଟାବ୍ଦରେ ଜାଭା ଦ୍ୱୀପର ସୋଲୋ ନଦୀ ଉପତ୍ୟକାରୁ ମିଳିଥିବା ମୁଣ୍ଡର ଖପୁରୀ ଜାଭା ମଣିଷର ଯୁଗ ସମ୍ବନ୍ଧରେ ପ୍ରକୃତ ସୂଚନା ଦିଏ । ଏହା ଆକାରରେ ମାଙ୍କଡ଼ ଜାତୀୟ ପ୍ରାଣୀର ଖପୁରୀ ଅପେକ୍ଷା ଢେର ବଡ଼ । ସାଧାରଣ ମଣିଷ ଖପୁରୀଠାରୁ ଏହା ଆକାରରେ ଥିଲା ସେତିକି କ୍ଷୁଦ୍ର । ଜଙ୍ଘର ହାଡ଼ର ଗଠନ ପରୀକ୍ଷା କରି ପ୍ରାଣୀ ବୈଜ୍ଞାନିକମାନେ ସ୍ପଷ୍ଟଭାବରେ ମତ ଦେଉଛନ୍ତି ଯେ, ଜାଭାମଣିଷ ଆମଭଳି ସିଧା ହୋଇ ଠିଆହୋଇ ପାରୁ-ଥିଲା । ଏ ପ୍ରକାର ମଣିଷ ପୃଥିବୀ ପୃଷ୍ଠରେ ପ୍ରାୟ ୫ଲକ୍ଷ ବର୍ଷ ପୂର୍ବେ ଜନ୍ମ ନେଇଥିବାର କଳ୍ପନା କରାଯାଏ । ପରବର୍ତ୍ତୀ ସମୟର ପେକିଂ ଓ ମଙ୍ଗୋଲିୟ ମଣିଷର ଅବଶେଷ ମଧ୍ୟ ମିଳିଥିଲା । ସେଗୁଡ଼ିକ ମଣିଷ ସୃଷ୍ଟିର କାଳ ନିର୍ଣ୍ଣୟ କରିବାରେ ସାହାଯ୍ୟ କରେ ।

ଆଜିର ବୈଜ୍ଞାନିକମାନେ କହନ୍ତି ପୃଥିବୀରେ ପ୍ରଥମେ ଜନ୍ତୁମାନର ଜୀବସୃଷ୍ଟି ହୋଇଥିଲେ । ତାର ଅନେକ ଯୁଗପରେ ମଣିଷର ସୃଷ୍ଟି ହୋଇ-ଥିଲା । ସମ୍ଭବତଃ ଆଜଠାରୁ ୧୫ଲକ୍ଷ ବର୍ଷ ପୂର୍ବେ ଏ ପ୍ରକାର ଜୀବସୃଷ୍ଟି ହୋଇଥିଲା । ଏହା ପରେ ଅନେକ ବଳିଷ୍ଠ ଭୌଗୋଳିକ ପ୍ରମାଣ ରହି ଆସିଛି ।

ପେକିଂ ମଣିଷର ପରବର୍ତ୍ତୀ କାଳରେ ମିଳିଥିବା ନିଏଣ୍ଡାର ଥେଲ ମଣିଷ ୟୁରୋପ ଓ ଉତ୍ତର ଆଫ୍ରିକାକୁ ନିଜର ବାସସ୍ଥାନ ରୂପେ ବ୍ୟବହାର

କରୁଥିଲେ । ବାହ୍ୟ ଗଠନରୁ ନିଏଣ୍ଡାର ଥେଲ୍ ମଣିଷ ଚଉଡ଼ା କପାଳ, ଚେପ୍‌ଟା ନାକ, ଉନ୍ନତ ହନୁହାଡ଼ ଓ ଗୋଟିଏ ବିରାଟ ମୁଣ୍ଡବିଶିଷ୍ଟ ମଣିଷଟିଏ ଥିଲା ବୋଲି ସ୍ପଷ୍ଟ ଜଣାପଡ଼େ । ଯଦିଓ ଶାରୀରିକ ଗଠନ କହେ ଏମାନେ ଅତ୍ୟନ୍ତ କ୍ରୂର ଓ କ୍ରୋଧୀ ସ୍ୱଭାବର ଥିଲେ ବୋଲି, ତଥାପି ବାସ୍ତବ କ୍ଷେତ୍ରରେ ଏମାନେ ଥିଲେ ସମ୍ପୂର୍ଣ୍ଣ ଭିନ୍ନ । ନିଜ ନିଜର ଜ୍ଞାତିକୁଟୁମ୍ବ-ମାନଙ୍କର ମୃତ ଶରୀରକୁ ଭଲଭାବରେ କବର ଦେବାକୁ ଶିଖିଥିଲେ । ପ୍ରାୟ ଆଜକୁ ୫୦,୦୦୦ ବର୍ଷ ତଳେ ପୃଥିବୀରେ ଥିବା ବହୁଳ ବରଫ ସ୍ରୋତଗୁଡ଼ିକ ତରଳିବାକୁ ଆରମ୍ଭ କରିଥିଲା । ତାହାର ପ୍ରଭାବରେ ନିଏଣ୍ଡାର ଥେଲ୍ ମଣିଷ ସମାଜ ଚିରଦିନ ପାଇଁ ଲୋପ ପାଇ ଯାଇଥିଲା ।

ନିଏଣ୍ଡାର ଥେଲ ଯୁଗରେ ମଙ୍ଗୋଲଏଡ୍ ମଣିଷର ପୃଥିବୀରେ ଦେଖାଦେଇ ଥିଲେ । ଏମାନେ ନିର୍ମମ ହିଂସ୍ର ବନ୍ୟ ପ୍ରାଣୀ ମାନଙ୍କ ସହିତ ପାହାଡ଼ ପର୍ବତ ଖୋଲରେ ରହୁଥିଲେ । ବାଘ, ଭାଲୁ, ଗଣ୍ଡା, ଆଦି ହିଂସ୍ର ଜନ୍ତୁ ଥିଲେ ଏମାନଙ୍କର ସହଚର । କାରଣ ମଙ୍ଗୋଲଏଡ୍‌ମାନେ ହିଂସ୍ର ଜନ୍ତୁ ମାନଙ୍କର ସୁନ୍ଦର ସୁନ୍ଦର ଚିତ୍ର ପାହାଡ଼ ପର୍ବତ ଗୁମ୍ଫା କାନ୍ଥରେ ଖୋଳିକରି ଆଙ୍କି ଯାଇଛନ୍ତି । ଏମାନେ ପଥରର ଅସ୍ତ୍ରଶସ୍ତ୍ର ମାନ ତିଆରି କରି ବ୍ୟବହାର କରୁଥିଲେ । ସୁତରାଂ ଏମାନଙ୍କୁ "ପ୍ରସ୍ତର ଯୁଗର ମଣିଷ" ବୋଲି ମଧ୍ୟ କୁହାଯାଏ । ପାହାଡ଼ ଓ ସବୁଜ ବନାନୀ ଦେଉଥିଲା ଏମାନଙ୍କୁ ଆଦିମ ବାସଗୃହ ପ୍ରଭୃତି । ମଙ୍ଗୋଲଏଡ୍ ମଣିଷ ଦେଖିବାକୁ ନିଏଣ୍ଡାର ଥେଲ ମଣିଷଠାରୁ ଖୁବ୍ ସୁନ୍ଦର ।

ନିଏଣ୍ଡାର୍ ଥେଲ ମଣିଷ ଅସ୍ତ୍ରଶସ୍ତ୍ର ବ୍ୟବହାର କରିବାର ପ୍ରମାଣ ଏପର୍ଯ୍ୟନ୍ତ ମିଳୁ ନଥିବାରୁ ମଙ୍ଗୋଲଏଡ୍ ମଣିଷ ସେମାନଙ୍କରୁ ଅଧିକ ଉନ୍ନତ ଓ କୁଶଳୀ ଥିଲେ । ଏହି ମଙ୍ଗୋଲଏଡ୍ ଏସିଆ ଓ ଇଉରୋପର କେତେକ ଅଞ୍ଚଳରେ ବାସ କରୁଥିଲେ । କିନ୍ତୁ ସେମାନେ ସମ୍ପୂର୍ଣ୍ଣ ଉଲଗ୍ନ ହୋଇ ରହୁଥିଲେ । ନିଜର କୌଣସି ଭାଷା ନଥିଲା । ନିଜର ବୋଲି କିଛି ଧାରଣା କରିପାରୁନଥିଲେ । ସତେ ଯେପରି ବଣ ଜଙ୍ଗଲର ଦୁଇ-ଗୋଡ଼ିଆ ଜନ୍ତୁଟିଏ । ଏଥିରେ ଆଶ୍ଚର୍ଯ୍ୟ ହେବାର ବିଶେଷ କିଛି ନାହିଁ ।

ଏବେବି ପୃଥିବୀର ଅନେକ ଅଞ୍ଚଳରେ ଲଙ୍ଗଳା ଅସଭ୍ୟ ଅନୁନ୍ନତ ମଣିଷର ବଂଶଧର ଲକ୍ଷଲକ୍ଷ ସଂଖ୍ୟାରେ ଦେଖିବାକୁ ମିଳନ୍ତି ।

ମଧ୍ୟପ୍ରଦେଶ, ବିହାର ଓ ଓଡ଼ିଶାର ବନ ଜଙ୍ଗଲରେ ଥିବା ବଣ୍ଡା ଜାତିର ମଣିଷ ଏବେବି ଅଧାଲଙ୍ଗଳା । ତାହାର ମଧ୍ୟ କିଛି ଲଗିତ ଭାଷା ଥିବାର ସନ୍ଧାନ ମିଳୁନାହିଁ । ବିଂଶଶତାବ୍ଦୀର ଶେଷକେଇ ମିନିଟରେ ଯାହା ଦେଖାଯାଏ ଲକ୍ଷ ଲକ୍ଷ ବର୍ଷତଳେ ତାହା ଠାରୁ ଅଧିକ କଳ୍ପନା କରିବା ଆକାଶ କୁସୁମ ଭଳି କିଛି ଆଉ କ'ଣ ? କ୍ରମଶଃ ଜଙ୍ଗଲ ସମ୍ପଦ ଦ୍ରୁତ ହାରରେ କ୍ଷୟ ହେଉଥିବାରୁ ଆଦିମ ଅଧିବାସୀମାନେ କିଛି କିଛି ଆଧୁନିକ ସଭ୍ୟତାର ଆଲୋକ ପାଇବାକୁ ସମର୍ଥ ହେଲେଣି । ଶହଶହ ନୃତତ୍ତ୍ୱବିଦ୍ ଗଣ, ବଣ୍ଡା ଜାତିର ଆଦିମ ଅଧିବାସୀ ମାନଙ୍କର ଜୀବନ ଧାରାକୁ ଅନୁସରଣ କରି ଆଦିମାନବ ସଭ୍ୟତା ସମ୍ବନ୍ଧରେ ଅନେକ କିଛି ଜାଣି ପାରୁଛନ୍ତି ।

ଆଦିମାନବ ପାଇଁ ପୃଥିବୀ ଥିଲା ଖୁବ୍ ଶ୍ରେଷ୍ଠ ଓ ବଡ଼ । ରହୁଥିବା ବଣ ଜଙ୍ଗଲ ମଧ୍ୟରେ ସୀମିତ । ନିଜ ବ୍ୟବହାରରେ ଲଗୁଥିବା ଗଛ, ପଥ ପଥର ଥିଲା ତା' ପାଇଁ ଜୀବନର ଭଣ୍ଡାର । ମଣିଷର ସଂଖ୍ୟା ଥିଲା ପ୍ରକୃତି ତୁଳନାରେ ନଗଣ୍ୟ । ଅଭାବ ବୋଲି ଜିନିଷଟିଏ ନଥିଲା । ଆବଶ୍ୟକତା ଅନାବଶ୍ୟକତା ବୁଝିବାର ଶକ୍ତି ନଥିଲା । ତେଣୁ ଜୀବନର ପରସ୍ପର ବର୍ତ୍ତିବ କେମିତି; କାରଣ ଅଭାବରେ ପଡ଼ିଲେ ସ୍ୱଭାବ ଛୁଏଁ ଛୁଏଁ ବଦଳି ଯାଏ ।"

କୌଣସିମତେ ମାଙ୍କଡ଼ପରି ଗଛ ଡାଳରେ, କୋରଡ଼ରେ ଦେହ ଲୁଚାଇ ଦେଲେ ଚଳିଯାଉଥିଲା । ଯାହାମିଳିଲା ଖାଇ ପେଟ ପୂରଣ କରି ଦେଲେ ହୋଇ ଯାଉଥିଲା । ଶତ୍ରୁ ମିତ୍ରର ବାଛ ବିଚାର ନଥିଲା ।

କିନ୍ତୁ ସବୁଦିନ ସମାନ ଯାଏ ନାହିଁ । କ୍ରମେ କ୍ରମେ ମଣିଷ ଖରା, ବର୍ଷା, ଶୀତ ଓ ହିଂସ୍ରଜନ୍ତୁର ଧାଡ଼ରୁ ନିଜକୁ ରକ୍ଷାକରିବାର ଆବଶ୍ୟକତା ଅନୁଭବ କରିଥିବ ନିଶ୍ଚୟ । ସଂଖ୍ୟା ବୃଦ୍ଧି ହେବା ସଙ୍ଗେ ସଙ୍ଗେ ଗୋଟିଏ

ଅଞ୍ଚଳର ମଣିଷ ଅନ୍ୟ ଅଞ୍ଚଳରେ ଜବର ଦଖଲ କରିଥିଲା । ନିଜର ଖାଦ୍ୟପେୟ ପାଇଁ, ତାହାଙ୍କ ଗୋଷ୍ଠୀଗତ ଜୀବନ ଯାପନ ପାଇଁ ପ୍ରଥମ ଶିକ୍ଷା, ଶତ୍ରୁ ଆକ୍ରମଣରୁ ନିଜକୁ ବଞ୍ଚାଇବା ପାଇଁ ମଜଭୁତ ଘରଟିଏ ତିଆରି କରିବାର ଆବଶ୍ୟକତା ପଡ଼ିଥିଲା । ସେହି ସ୍ୱଳ୍ପ ଜ୍ଞାନରୁ ଆଜି ଶହ ଶହ ମହଲା କୋଠା ବାଡ଼ି, ବର୍ତ୍ତମାନ ପୋଲ ନଦୀବନ୍ଧର ସୃଷ୍ଟି । ଘରଟିଏ ପାଇବାପରେ ମଣିଷର ଚିନ୍ତାଧାରା ମଧ୍ୟ ଘର ଧରିଯାଇଥିଲା । ନିଜ ଅଞ୍ଚଳର ସାଥୀ ମଣିଷଙ୍କୁ ନିଜର ମନୋଭାବ ଜଣାଇବା ପାଇଁ ଠାରରୁ ଆରମ୍ଭ କରି ଆଜିର ଉନ୍ନତ କଥନର ଭାଷାଯାଏ ମଣିଷ ସୃଷ୍ଟି କରି ପାରିଲା । ଦିନେ ରହଣି ଢଙ୍ଗରେ ପରିବର୍ତ୍ତନ ଆସିଯିବା ପରେ ମଣିଷ ଆତ୍ମରକ୍ଷା ଓ ଭଲ ଖାଇବାର କଳ୍ପନା କରିଥିଲା । ଉନ୍ନତ ଧରଣର ସୁସ୍ୱାଦୁ ଖାଦ୍ୟ ପାଇଁ ନିଆଁର ବ୍ୟବହାର ଶିଖିଥିଲା ଜଙ୍ଗଲରେ ଲାଗି-ଯାଉଥିବା ନିଆଁରୁ । ସମ୍ପ୍ରତି ନିଆଁକୁ ବିଭିନ୍ନ ଆକାରରେ ନିଜର କରାୟତ୍ତ କରି ଆଜିଯାଏଁ ଆସିଯାଇଛି ।

ଏତେ ସବୁ ଉନ୍ନତ କରିବା ହେଲେ ଜଣେ ମଣିଷ ପକ୍ଷରେ ସମ୍ଭବ ନୁହେଁ । ସେଥିପାଇଁ ସାମାଜିକ ଶ୍ରେଣୀର ଉଦ୍ଭାବନ ହୋଇଥିଲା । ସମ୍ପୂର୍ଣ୍ଣରୂପେ ସଙ୍ଗୀତ ଓ ସାହିତ୍ୟ ବିଜ୍ଞାନର ପ୍ରସାର ପାଇଁ ଗଢ଼ିଉଠିଥିଲା ବିଦ୍ୟାଳୟମାନ ଏବେବି ନାଳନ୍ଦା ଓ ତକ୍ଷଶୀଳା ଲଳିତଗିରିର ବିଶ୍ୱବିଦ୍ୟାଳୟ ସେ ଦିନର ଶିକ୍ଷାର ମାନ କେତେ ଥିଲା ସ୍ପଷ୍ଟ ଭାବରେ ବୁଝାଇଦିଏ । ଶିକ୍ଷାର ପ୍ରସାର ସହିତ ତାଳଦେଇ ମଣିଷ ଆଗରେ ଆସିଥିଲା କୃଷି ଓ ବାଣିଜ୍ୟ କ୍ଷେତ୍ରରେ । ଘନ ଜଙ୍ଗଲ ସଫାକରି ତାହା ଉପରେ ଠିଆ କଲା ଅନେକଲୋକ ରଙ୍ଗ ବେରଙ୍ଗର ଖାଦ୍ୟ ଭଣ୍ଡାର । ହେଲେ କୃଷିରେ ଜଳ ସେଚନର ଅଭାବ ଅନୁଭବ କରି କୂଅ ପୋଖରୀ, ନାଳ ମାନ ଖୋଳାଇ ଚାଲିଥିଲା । ନିଜର ସୁଖସ୍ୱାଚ୍ଛନ୍ଦ୍ୟ ପାଇଁ ବଡ଼ ବଡ଼ ଗାଆଁ ଓ ସହର, ଯାନବାହାନର ପରି-କଳ୍ପନା କରାଯାଇଥିଲା । ହରପ୍ପା ମହେଞ୍ଜୋଦାରୋ, ଶିଶୁପାଳ ଗଡ଼ର ଗଠନ ଆଜିବି ପୁରୁଣା ଯୁଗର ମୂକ ସାକ୍ଷୀ ରୂପେ ଠିଆହୋଇଛନ୍ତି ।

କୃଷି ବାଣିଜ୍ୟର ସହାୟକ ଭାବରେ ପଶୁ ପାଳନକୁ ମଣିଷ ଜୀବନଧାରାର ଏକ ଅଙ୍ଗଭାବେ ଗ୍ରହଣ କରି ନେଇଥିଲା ।

ସଭ୍ୟତାର ସଂରକ୍ଷଣ ପାଇଁ ସୃଷ୍ଟି ହୋଇଥିଲା ପଞ୍ଚାୟତ, ରାଜ୍ୟ, ସାମ୍ରାଜ୍ୟ ପ୍ରଭୃତି । ଅନେକ ପ୍ରକାର ଲୋକ ଗୋଟିଏ ସ୍ଥାନରେ ବାସକରି ଆସୁଥିଲେ ବିନା ବିବାଦରେ । ତାହାର ମୂଳମନ୍ତ୍ର ଥିଲା ସରଳ ବିଶ୍ୱାସ, ସହୋଦର ପଣିଆ ବା ନିର୍ମଳ ଭ୍ରାତୃମୂର୍ତ୍ତି ଯାହାକି ଆଜି ଦୁରୂହ ଓ ଜଟିଳ କଳ୍ପନାରେ ରହି ଯାଇଛି ।

ଆଗକୁ ଆଗକୁ ମଣିଷ ସମାଜ କେଉଁ ଢଙ୍ଗରେ ଧାଇଁ ଚାଲିଛି, ତାହା ନିତାନ୍ତ ପକ୍ଷେ ଜାଣିବାର କଥା । ବର୍ତ୍ତମାନର ସମାଜ ଆଗେଇ ଚାଲିଛି ଏକ ସାଂସ୍କୃତିକ ପରିବର୍ତ୍ତନର ମାର୍ଗରେ । ଶରୀର ସହିତ ପରି- ବେଷ୍ଟନୀର ତୁଳନାତ୍ମକ ପରିବର୍ତ୍ତନ ହିଁ ପ୍ରକୃତ ସାଂସ୍କୃତିକ ପରିବର୍ତ୍ତନ । ଏହାର ନିର୍ଭୁଲ ବିଚାର ପାଇଁ ମଣିଷ ଶିଖି ପାରିଛି ଦୈହିକ ବିବର୍ତ୍ତନର ମୂଳମନ୍ତ୍ର । ଦୈହିକ ବିବର୍ତ୍ତନର ତଥ୍ୟ ଅନୁସାରେ ପ୍ରତ୍ୟେକ ପ୍ରକାର ପରିବର୍ତ୍ତନ ମଣିଷ ଜୀବନରେ ବଂଶଗତ ଭାବରେ ଗଡ଼ି ଚାଲିଆସିଛି । ପୂର୍ବ ପୁରୁଷଙ୍କ ଜୀବନଧାରାରୁ ଉପାଦେୟ ଅଂଶତକ ବାଛିନେଇ ତାହାର ଯଥା- ସମ୍ଭବ ସଂଶୋଧନ କରିବାରେ ଆମେ ଆଜି ବ୍ୟସ୍ତ । ଏସବୁର କାରଣ ଆମ ଶରୀରର ଦୈହିକ ପରିବର୍ତ୍ତନ । ଦୈହିକ ପରିବର୍ତ୍ତନର କେନ୍ଦ୍ରବିନ୍ଦୁ- ସ୍ୱରୂପ ଜିନ୍ ବା ଜୀବକେନ୍ଦ୍ରକୁ ଅନେ ଦେଇ ପାରୁଛୁ । ଯାହା ପ୍ରଭାବରେ ଆମେ ଉନ୍ନତରୁ ଉନ୍ନତତର ହେବା ଚେଷ୍ଟାରେ ସର୍ବଦା ବ୍ୟସ୍ତ ।

ମଣିଷ ଜୀବନ ଭଳି ପଶୁପକ୍ଷୀଙ୍କ ଜୀବନଧାରା ମଧ୍ୟ ଜିନ୍ ଦ୍ୱାରା ପ୍ରଭାବିତ । ନିଜ ନିଜ ବାପ ମାଆଙ୍କ ଠାରୁ ଶିଖିଥିବା ବିଷୟ ନିଜନିଜର ଛୁଆମାନଙ୍କୁ ଶିଖାଇବାକୁ ଭୁଲି ନାହାନ୍ତି । ଏବେବି ମାଆ ପକ୍ଷୀ ନିଜ ଛୁଆକୁ ଶିଖାଉଛି ଡେଣାଝାଡ଼ି ଉଡ଼ିବାକୁ ଓ ସ୍ୱର ଅନୁକରଣ କରି ସଙ୍ଗୀତ ଗାଇବାକୁ ।

ସମୟର ପ୍ରଭାବରେ ପ୍ରାକୃତିକ ପରିବର୍ତ୍ତନ ସହ ତାଳଦେଇ ମଣିଷ ଓ ପଶୁପକ୍ଷୀ ସମାଜ ଚାଲିଆସିଛି ନିଜର ସୁରକ୍ଷା ପାଇଁ । ପକ୍ଷୀମାନେ ସୁନ୍ଦର

ସୁନ୍ଦର ବସା ତିଆରି କରନ୍ତି । ମୂଷା ଗାତଟିଏ ଖୋଳେ, ଉନ୍ନତ ଜୀବ ମଣିଷ ସୁନ୍ଦର ସୁନ୍ଦର ସୌଖିନ ଘର ତିଆରି କରି ପ୍ରକୃତିର ଝଡ଼କୁ ଏଡ଼ାଇ ଚାଲିଛି । ଶୀତଦିନେ ସାଇବେରିଆର ଭୀଷଣ ଶୀତରୁ ନିଜକୁ ମୁକ୍ତ କରିବା-ପାଇଁ ହଜାର ହଜାର କିଲୋମିଟର ଆକାଶପଥରେ ଅନେକ ପକ୍ଷୀ ଓଡ଼ିଶାର ଚିଲିକା, ଅଂଶୁପା ହ୍ରଦକୁ ଉଡ଼ି ଆସୁଥିବା ଏହାର ଜ୍ୱଳନ୍ତ ପ୍ରମାଣ ।

ଅତୀତରେ ନିଜର ଉନ୍ନତି ପାଇଁ ମଣିଷ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ଓ ସମବାୟ ଜୀବନର ଶିକ୍ଷା ଗ୍ରହଣ କରିନେଇଛି । ସମ୍ଭବତଃ ଏ କ୍ଷେତ୍ରରେ ମଣିଷର ଗୁରୁ ମହୁମାଛି, ପିମ୍ପୁଡ଼ି ଓ ଉଇ । ମଣିଷ ସମାଜର ଉଦ୍ଘୋଷଣ ହୋଇ ଆସିଛି **"ଏକତା ହିଁ ବଳ"** ।

ସବୁ କାଳରେ କେତେକ ମହାମନିଷୀ ପୃଥିବୀ ପୃଷ୍ଠରେ ଜନ୍ମନେଇ ମଣିଷକୁ ଶିକ୍ଷା, ସଭ୍ୟତାର ଜ୍ଞାନ ଦେଇ ଯାଇଛନ୍ତି । ପୃଥିବୀରେ ସମାଜ ସଂସ୍କାରକର ଭୂମିକା ନେଇ ଚାଲିଗଲେ କିଶୋର ଆଖ୍ୟାନେଇ ଯାଇଛନ୍ତି । ଶିକ୍ଷା ଦେଇଛନ୍ତି କଠିନ ସାଧନା ଓ ଅଧ୍ୟବସାୟ ।

ସେଇ ମନ୍ତ୍ରକୁ ପାଥେୟ କରି ଆଜିକାଲିର ଉଲଗ୍ନ ମାନବର ଉତ୍ତର ପୁରୁଷଗଣ ଆମେ ପାଦ ବଢ଼ାଇଛୁ ସ୍ୱର୍ଗକୁ । ସେ ଯାତ୍ରା ଅସୀମ... ଅନନ୍ତ ।

—୧୦ଃ—

# "ଯାହାର ଖାଆନ୍ତି, ତାକୁହିଁ ମାରନ୍ତି"

"ଯାହାର ଖାଆନ୍ତି, ତାକୁହିଁ ମାରନ୍ତି" ଅଥବା "ଉପକାରୀକୁ ବାଟରେ ମାରିବା ନ୍ୟାୟ" ପ୍ରବଚନଟି କେଉଁ ହଜିଲା ଦିନର କଥା ତା'ର ହିସାବ ପୋଥି ପତ୍ରରେ ନଥିବାରୁ ପାଇବା ମୁସ୍କିଲ ବ୍ୟାପାର। ତଥାପି ମଣିଷ ଜୀବନର ଯୁଗ ଯୁଗ ଗଢ଼ି ଆସିଥିବା ସାଧାରଣ ପ୍ରବୃତ୍ତିକୁ ଲକ୍ଷ୍ୟରେ ରଖି ପ୍ରବଚନଟିର ଅବତାରଣା କରିଥିବାର ଅନୁମାନ କରାଯାଏ। ଟିକିଏ ନିରୋଳା ଭାବରେ ଚିନ୍ତାକଲେ ଗୋଟିଏ ଅତି ସୁନ୍ଦର ଓ ସହଜ ଉଦାହରଣ ମୁଣ୍ଡକୁ ଫୁଟେ। ସେଇଟି ଆମର "ଅଠର ଓଳି" 'ଉପାଖ୍ୟାନ ଗପଟିର ଆଲୋଚନା କରିବା ନିଷ୍ପ୍ରୟୋଜନ। କିନ୍ତୁ ଗପଟିକୁ ଖାମଖିଆଲ ଭାବରେ ଗ୍ରହଣ ନକରି ପ୍ରକୃତ ବିଶ୍ଳେଷଣ କରି ବସିଲେ ଆଜିକାଲି ଆମ ମଣିଷ ସମାଜର ଚିତ୍ରଟିଏ ଆଖି ଆଗରେ ନାଚିଯାଏ। "ଅବୋଲକରା" କାହାଣୀର ଅଠର ଓଳିଏ ମରି ହଜି ଯାଇ ନାହାନ୍ତି ବରଂ ଯୁଗେ ଯୁଗେ ଆମରି ଭିତରେ ଲକ୍ଷ ଲକ୍ଷ ସଂଖ୍ୟାରେ ବଞ୍ଚି ରହିଛନ୍ତି। ନିଜକୁ ଯେତେ ସଭ୍ୟ, ଶିକ୍ଷିତ ବୋଲି କହି ବୁଲିଲେ ମଧ୍ୟ ଆମେ ଯେ ପ୍ରକୃତରେ ସଭ୍ୟ ନୋହୁଁ କି ଶିକ୍ଷିତ ନୋହୁଁ ତାହାର ପଣ ପଣ ପ୍ରତ୍ୟକ୍ଷ ଉଦାହରଣ ମିଳିଥାଏ। ନିତି ସକାଳୁ ସଞ୍ଜଯାଏଁ ଆମେ କେତେ ଭୁଲ କରୁ ବସୁ ତା'ର ଇୟତ୍ତା ନାହିଁ। ସୁତରାଂ ଆଜିର ମଣିଷ କହେ "ଭୁଲ କରିବା ମଣିଷର ସ୍ୱାଭାବିକ ଗୁଣ"; କିନ୍ତୁ ଆମେ କ'ଣ ପ୍ରକୃତରେ ମଣିଷ। ପ୍ରକୃତରେ ନିଜକୁ, ନିଜର ପୂର୍ବପୁରୁଷମାନଙ୍କୁ ଚିହ୍ନି ପାରିଅଛୁ। ନିଜର ପୂର୍ବପୁରୁଷମାନଙ୍କୁ ଚିହ୍ନି ପାରିଥିଲେ ଏ ମାଟିର ପୁଅ ଦୁଃଖରେ ରହି ନ ଥାନ୍ତା—

"କି ଥିଲା ଏ ରାଜ୍ୟ
କି ହୋଇଛି ଆଜ ।"

ବାସ୍ତବରେ ଏ ଦେଶର ସଂସ୍କୃତି, ସଭ୍ୟତା ଗଢି ଉଠିଥିଲା ନିବିଡ଼ ଅରଣ୍ୟର ବୃକ୍ଷଲତା ଘେରା ଗୁରୁ ଆଶ୍ରମରେ । ତକ୍ଷଶିଳା, ନାଳନ୍ଦା ଆଜି ତାହାର ମୂକସାକ୍ଷୀ । ଗୁରୁ ଆଶ୍ରମଗୁଡ଼ିକୁ ଗୁରୁକୁଳ ବୋଲି କୁହାଯାଉଥିଲା । ସେଇସ୍ଥାନଗୁଡ଼ିକ ଥିଲା ଦେଶ ଗଠନର ମୂଳପିଣ୍ଡ ।

ଗୁରୁକୁଳ ଆଜି ହୋଇଯାଇଛି । ତାହାର ଉଦାହରଣ ଶ୍ରୀରାମ, ଶ୍ରୀକୃଷ୍ଣ, କର୍ଣ୍ଣ, ଅର୍ଜୁନ ଆଦି ଅମର । ଏମାନଙ୍କ ବ୍ୟତୀତ ଚିକିତ୍ସା ଶାସ୍ତ୍ରର ଜନକରୂପେ ଖ୍ୟାତ ଧନ୍ୱନ୍ତରି, ଚରକ, ଶୁଶ୍ରୁତ, ମାଧବ ଓ ଭାବମିଶ୍ର-ଭୂର୍ଯ୍ୟ ମଧ୍ୟ ସେଇଭଳି ଗୁରୁକୁଳର ଛାତ୍ର । ସେମାନେ କେହି ଆଜିଭଳି ଝକମକ କୋଠାଘର, ଚକଚକ ବେଞ୍ଚ ଦେଖି ନଥିଲେ । ତାଙ୍କର ପାଠଶାଳା ଥିଲା ସବୁଜ ବଣଭୂଇଁର ବିଶାଳ ଗଛମୂଳ, ଯେଉଁଠି ବୃକ୍ଷଲତା ନିଜର ସ୍ୱଭାବ ସୁଲଭ ଭଙ୍ଗୀରେ ମଣିଷ ସମାଜ ଗଢ଼ିବାରେ ଲାଗି ପଡ଼ିଥିଲେ; କିନ୍ତୁ ଆଜିର ଆଧୁନିକ ଲୋକ ସେମାନଙ୍କର ବଂଶ ନାଶ କରିବାରେ ବ୍ୟସ୍ତ ।

ବୃକ୍ଷଲତା ଆମର ବିପଦ ଆପଦର ବନ୍ଧୁ । ଭୋକିଲା ପେଟକୁ ଦାନା, ଫୁଙ୍ଗୁଳା ପିଠିକୁ କନା, ବାହ୍ୟ ଶତ୍ରୁ ଆକ୍ରମଣ ପାଇଁ ସୁନ୍ଦର ଘରଟିଏ ଯୋଗାଇ ଦେଇ ଥାଆନ୍ତି । ଏ ସବୁକୁ ବାଦ୍ ଦେଲେ ରୋଗ ବ୍ୟାଧିରେ ପଡ଼ିଲେ ପଥ୍ୟ, ପାଚନ, ଔଷଧ ଦେଇ ଆମକୁ ସୁସ୍ଥ କରି ଥାଆନ୍ତି । ସବୁଗୁଡ଼ିକ ଠିକ ଜାଣି ହୋଇ ପୁରାଣ ପୃଷ୍ଠାରେ ଲେଖାଯାଇଅଛି । ସେଇ ଅଜଣା ବନରେ କେବେ ଏକ ଗୁରୁକୁଳରୁ ଚିକିତ୍ସାଶାସ୍ତ୍ର 'ଆୟୁ-ର୍ବେଦ'ର ସୃଷ୍ଟି । ପରେ ଏହାକୁ ଅଥର୍ବ ବେଦର ଅଂଶରୂପେ ଗ୍ରହଣ କରା-ଯାଇଛି । ମଣିଷ, ପଶୁପକ୍ଷୀ ସବୁର ଚିକିତ୍ସା ବିଧାନର ପ୍ରଣାଳୀ ସେଇ 'ଆୟୁର୍ବେଦ ଶାସ୍ତ୍ର'ରେ ଲେଖାଯାଇଅଛି । ଚରକ, ଶୁଶ୍ରୁତ ଆୟୁର୍ବେଦ ଯୁଗରେ ଥିଲେ ଆଚାର୍ଯ୍ୟ । ବୃକ୍ଷମାନଙ୍କୁ ଗଛ ପତ୍ରରୁ କଟେରି ଅବଧି

ଔଷଧ ପ୍ରସ୍ତୁତ କରି ଉପଯୁକ୍ତ ପ୍ରୟୋଗ କରିପାରିବ ତାହା ଶିକ୍ଷା ଦେଉଥିଲେ । ନିଜ ମନ୍ଦପୁରେ ମାଧବ ଆଚାର୍ଯ୍ୟ ବୋଲି ଜଣେ ଛାତ୍ର ତାଙ୍କର ଗୁରୁକୁଳରେ ପଢୁଥାଆନ୍ତି । ମାଧବ ପାଠ ପଢ଼ାରେ ଥିଲେ ସବୁଠାରୁ ଆଗୁଆ । ଗୁରୁଙ୍କର ପ୍ରିୟତମ ଛାତ୍ର ହିସାବରେ ତାଙ୍କର ସୁନାମ ଥାଏ ସହପାଠୀ ଗହଣରେ । ଗୁରୁକୁଳର ପାଠପଢ଼ା ଶେଷ କରି ମାଧବ ଘରକୁ ଲେଉଟିବା କଥା ନିଜର ଉପାଧ୍ୟାୟଙ୍କ ପାଖରେ ଜଣାଇଲେ । ବିଦାୟ ବେଳାରେ ଗୁରୁ କହିଲେ, "ମାଧବ ! ତୁମେ ମୋର ଅତି ପ୍ରିୟ ଛାତ୍ର, ସୁତରାଂ ଦକ୍ଷିଣା କ'ଣ ଦେବ ? ମୋର ଦୁଇଟି ମାତ୍ର କାମ କରିଦେଇ ନିଜର ଭବିଷ୍ୟତ ଗଢ଼ିବାରେ ଲାଗିଯିବ । ପ୍ରଥମ କାମଟି ହେଲା, ଏଠାରୁ ଦେଢ଼ ମାସର ବାଟ ଗଲେ ମୋର ଜଣେ ଅନ୍ତରଙ୍ଗ ବନ୍ଧୁଙ୍କ ଆଶ୍ରମ ପଡ଼ିବ । ଅନେକ ଦିନ ଧରି ସାକ୍ଷାତ ହୋଇପାରି ନାହିଁ । ମୁଁ ତୁମ ହାତରେ ଖଣ୍ଡିଏ ପତ୍ର ଦେଉଛି । ସେଇଟି ନେଇ ବନ୍ଧୁଙ୍କୁ ଦେବ ଓ ତାହାର ଉତ୍ତର ଆଣିବ । ଗଲାବେଳେ ବାଟରେ ଯେତେ ତେନ୍ତୁଳି ଗଛ ପାଇବ ସବୁଠାରୁ ମୁଠାଏ ମୁଠାଏ ପତ୍ର ଛିଣ୍ଡାଇ ଖାଇ ଖାଇ ଯିବ ଓ ପ୍ରତ୍ୟେକ ଦିନ ଯାତ୍ରା ଶେଷରେ ଗୋଟିଏ ତେନ୍ତୁଳି ଗଛ ମୂଳରେ ବିଶ୍ରାମ କରି ରାତିଟି କଟାଇବ । ଏହା ଏକ ବିଶେଷ ନିୟମ ଓ ମୋର ଆଦେଶ ଭାବେ ପାଳନ କରିଥିବ । ଗୁରୁପ୍ରାଣ ଗତ ମାଧବ ସେଇ ଅନୁସାରେ ବାଟ ଚାଲି ଚାଲି ଗୁରୁଙ୍କ ବନ୍ଧୁଙ୍କୁ ସାକ୍ଷାତ କଲେ । କିନ୍ତୁ ସେତେବେଳକୁ ଯୁବକ ମାଧବଙ୍କ ଦେହ ସାରା କୁଷ୍ଠରୋଗର ଛଉ ଚକା ଚକା ହୋଇ ଉଠିଯାଇ ଥାଏ । ଏଥିପାଇଁ ଗୁରୁଙ୍କ ବନ୍ଧୁ ଖୁସିହେଲେ । ଉତ୍ତର ଲେଖି ପୁଣି ମାଧବଙ୍କୁ କହିଲେ, "ବତ୍ସ ! ତୁମେ ଏଠୁ ଗଲାବେଳେ ବାଟରେ ଯେତେ ଲିମ୍ବଗଛ ପାଇବ ସବୁଠୁ ମୁଠାଏ ମୁଠାଏ ପତ୍ର ଛିଣ୍ଡାଇ ଖାଇବ ତଥା ପ୍ରତିଦିନ ଲିମ୍ବଗଛ ମୂଳେ ହିଁ ବିଶ୍ରାମ କରି ରାତି କଟାଇବ । ସେଇଭଳି ଗୁରୁକଥା ମାନି ମାଧବ ଫେରି ଆସିଲେ । ମାତ୍ର ସେ କ'ଣ ଦେଖିଲେ, ଆଶ୍ଚର୍ଯ୍ୟ-ଜନକ ଭାବେ ଦେହରୁ କୁଷ୍ଠରୋଗର ଚିହ୍ନ ଲୋପ ପାଇଯାଇ ସେ ପୂର୍ବାପେକ୍ଷା ଶତଗୁଣ ଅଧିକ ତେଜୋଦୀପ୍ତ ଦେଖାଗଲେ । ମାଧବ ତ ସହଜେ ବୁଦ୍ଧିମାନ ଛାତ୍ର । ଗୁରୁଙ୍କର ଏହି ଯାତ୍ରା ପଛରେ ଥିବା ଗୁଞ୍ଜନ

ଓ ପ୍ରତ୍ୟକ୍ଷ ଶିକ୍ଷା ଦାନର ଉଦ୍ଦେଶ୍ୟ ବୁଝିପାରି ଗୁରୁଙ୍କ ପ୍ରତି କୃତଜ୍ଞ ହୋଇ ପଡ଼ିଲେ ।

ଗୁରୁଙ୍କର ଦ୍ୱିତୀୟ ଆଦେଶ ଥିଲା ଆଶ୍ରମର ଭେଷଜ ଉଦ୍ୟାନଟିକୁ ଭଲଭାବେ ପରୀକ୍ଷା କରି ସଂସ୍କାର କରିଦେବା । ଯେପରି ଭବିଷ୍ୟତରେ ଛାତ୍ରମାନଙ୍କ ପାଇଁ ତାହା ହେବ ସୁଗମ୍ୟ । କିନ୍ତୁ ତାହା ଥିଲା ସର୍ତ୍ତମୂଳକ । ପ୍ରତ୍ୟେକ ଗଛର ଦୋଷ ଗୁଣ ବାଛି ଗୋଟିଏ ଗୋଟିଏ ଭୂର୍ଜ ପତ୍ରରେ ଲେଖି ପାରିବା ପରେ ଅନାବନା ଗଛ ଲତାଗୁଡ଼ିକୁ ଉପାଡ଼ି ପାରିବେ । ଏହାକୁ ଏକ ନିହାତି ସହଜ କାମ ଭାବରେ ଗ୍ରହଣ କରିନେଇ ମାଧବ ଆରମ୍ଭ କଲେ । ମାତ୍ର ପ୍ରତ୍ୟେକ ଗଛ ଲତାର ପ୍ରକୃତି, ଉପଯୋଗୀତା, ଅପଯୋଗୀତା ବାଛି ଲେଖିବାରେ ଏଣେ ଅଠର ବର୍ଷ ବିତି ଗଲାଣି, ତାହା ତାଙ୍କୁ ଜଣାଗଲା ନାହିଁ । ଯୁବକ ମାଧବ ହେଲେ ପ୍ରୌଢ଼ । ଲୁଚି ଗଲେ ଭୂର୍ଜ ପତ୍ର ଜହାଡ଼ ମଧ୍ୟରେ । ଗୁରୁଙ୍କର ଦୟାର ସୀମା ନାହିଁ । ସେ ଠିକ୍ ଜାଣିଥିଲେ କେଉଁ ନଈରେ କେତେ ପାଣି ବୋଲି । ଅଠରବର୍ଷ ପରେ ଗୁରୁଙ୍କର ଆଦେଶ ହେଲା ମାଧବଙ୍କୁ ଫେରି ଆସିବାକୁ । ମାତ୍ର ମାଧବ ଅନିଚ୍ଛୁକ । କାମ ଯେ ଶେଷ ହୋଇନାହିଁ । କାର୍ଯ୍ୟରତ ଓ ଜ୍ଞାନୋଦୟ ମାଧବଙ୍କ କଣ୍ଠରୁ ସ୍ୱର ଆସୁଥିଲା "ହେ ଗୁରୁଦେବ ! ପୃଥିବୀର କୌଣସି ଗଛ ଲତା ଅଦରକାରୀ ନୁହନ୍ତି, ନିଜର ସ୍ୱଭାବ ସୁଲଭ ଗୁଣରେ ପ୍ରତ୍ୟେକ ମଣିଷର ବନ୍ଧୁ ମାତ୍ର ।" ଯୁଗସ୍ରଷ୍ଟା ଚରକଙ୍କ ଆଖି ନଇଁ ଝରି ଆସୁଥିଲା ଧାରି ଧାରି ଆଶୀର୍ବାଦର ସୁଅ ।

"ନିଦାନେ ମାଧବ ଶ୍ରେଷ୍ଠ
ନ ଦ୍ୱିତୀୟା ସମ୍ଭବତି ।"

ଚରକଙ୍କର ପ୍ରିୟ ଛାତ୍ର ମାଧବ ରଚନା କରିଗଲେ "ଆୟୁର୍ବେଦର ନିଦାନ ଯୁଗ" ନିଜ ଲିଖିତ "ମାଧବ ସଂହିତା"ର ପ୍ରତ୍ୟେକ ଧାଡ଼ିରେ । ଅବଶ୍ୟ ଆଜି ଆମେ ଦେଖୁଥିବା "ମାଧବ ସଂହିତା' ଅକ୍ଷତ ନା ବିକୃତ କହିହେବ ନାହିଁ । ଆୟୁର୍ବେଦ ପଦ୍ଧତିରେ ପ୍ରତ୍ୟେକ ଔଷଧର ଦ୍ରବ୍ୟଗୁଣ

ରସାୟନ ଓ ପ୍ରସ୍ତୁତ ବସ୍ତୁଗତଭାବେ ମାଧବ ସହାୟତାରେ ବଞ୍ଚିତ । ମାଧବଙ୍କୁ ଆଜି ଆଉ ମୂଳ ମିଳୁନି ପ୍ରାୟ । ଜଙ୍ଗଲର ମାଧବ ସୁନ୍ଦର ଜଙ୍ଗଲରେ ଲୁଚିଗଲେଣି ଏକରକମ । ଆୟୁର୍ବେଦ ଆଜି ଅସ୍ଥିକଙ୍କାଳସାର କର୍କଟ ରୋଗଗ୍ରସ୍ତ ହୋଇ ପଡ଼ିଛି ।

ସେକାଳର ଚିକିତ୍ସା ପଦ୍ଧତି ଏବର ନୂତନ ଗତକୁ ତୁଳନା କରାଯାଇ ନ ପାରେ । ଆଜିର ଚିକିତ୍ସାଶାସ୍ତ୍ର ସ୍ୱୟଂ ସମ୍ପୂର୍ଣ୍ଣ ନୁହେଁ । ସମ୍ପୂର୍ଣ୍ଣରୂପେ ପରମୁଖାପେକ୍ଷୀ । ଜଣେ ଆୟୁର୍ବେଦର ଗୁଣ ଚିକିତ୍ସା ଶାସ୍ତ୍ର ସମସ୍ତ ବିଭାଗରେ ସ୍ୱୟଂ ସମ୍ପୂର୍ଣ୍ଣ ହୋଇଥିବାବେଳେ ଜଣେ ଆଧୁନିକ ଚିକିତ୍ସକ ଔଷଧର ପ୍ରସ୍ତୁତ ସମ୍ବନ୍ଧରେ ଅଜ୍ଞ । କାଗଜ ଦେଖି ରୋଗୀକୁ ଔଷଧ ଲେଖିଦେଲେ କାମ ଶେଷ । ଯାହାହେଉନା କାହିଁକି ଆଜିକାଲି ବ୍ୟବହାର କରାଯାଉଥିବା ଔଷଧମାନଙ୍କ ମଧ୍ୟରୁ ଶତକଡ଼ା ଷାଠିଏ ଭାଗ ମିଳିଥାଏ ବଣ ଜଙ୍ଗଲର ଗଛଲତାମାନଙ୍କଠାରୁ । ୧୯୬୮ ମସିହାରେ ଆମେରିକାର ଚିକିତ୍ସାବିତ୍‌ମାନେ ଏହା ପରୀକ୍ଷାମୂଳକ ଭାବେ ପ୍ରମାଣିତ କରିପାରିଥିଲେ । ପ୍ରାୟ ଶହେଟି ପ୍ରାକୃତିକ ଓ ପଚିଶଗୋଟି ବୃକ୍ଷଲତା ରସରୁ ବିଶୁଦ୍ଧ ରସାୟନିକ ଔଷଧ ରୂପେ ବହୁଳ ମାତ୍ରାରେ ବ୍ୟବହୃତ ହେଉଥିଲ । ଅତୀତରେ ଆୟୁର୍ବେଦ ଯୁଗରେ ଅନୁମାନ ପ୍ରକାରର ଔଷଧର ପ୍ରମାଣ ଦିଆଯାଇଅଛି । ସୁତରାଂ ଆମେ ବୃକ୍ଷଲତାରୁ ପ୍ରସ୍ତୁତ ଔଷଧଗୁଡ଼ିକୁ ଦୁଇଭାଗରେ ବିଭକ୍ତ କରି ପାରିବା । (୧) ସର୍ବସାଧାରଣ ପ୍ରଚଳିତ ଔଷଧ ଏବଂ (୨) ଆଧୁନିକ ବିଜ୍ଞାନ ପ୍ରସ୍ତୁତ ଭେଷଜ ଔଷଧ ।

ସର୍ବସାଧାରଣ କିପରି ଭାବରେ ପ୍ରତିଦିନ ନିଜର ଶରୀର ରକ୍ଷା ପାଇଁ ପ୍ରତିଷେଧକ ବ୍ୟବହାର କରିପାରିବେ ତାହାପାଇଁ ପୁରାତନ ଆୟୁର୍ବେଦର ପ୍ରବର୍ତ୍ତକମାନେ କେତେକ ନିୟମ ପ୍ରଣୟନ କରି ଯାଇଛନ୍ତି । ନିୟମ ଗୁଡ଼ିକ ଯେପରି ମଣିଷ ଜଣା ଓ ଅଜଣା ଭାବରେ ପାଳନ କରି-ପାରିବେ, ସେଥିପାଇଁ ସେଗୁଡ଼ିକୁ ସଦାଚାର ବା ଧର୍ମର ଅଂଶ ବିଶେଷ ଭାବେ ଘୋଷଣା କରାଯାଇଥିଲା । ଭାରତୀୟମାନେ ଜନ୍ମଗତଭାବେ ଧର୍ମଭୀରୁ । ତେଣୁ ପ୍ରଚଳିତ ସାମାଜିକ ସଦାଚାରକୁ ସମ୍ମାନ ଦେବାକୁ ଭୁଲ

ନଥିଲେ । ପ୍ରକୃତରେ ଏସବୁ ମୂଳରେ ଥିଲା ଉନ୍ନତ ବୈଜ୍ଞାନିକ ଚିନ୍ତାଧାରା । ଗଛଟିଏ ଲଗାଇ ତାହାର ଯତ୍ନନେବା ଏକ ଧର୍ମ ବୋଲି ଲୋକମାନଙ୍କୁ ବୁଝାଇ ଦିଆଯାଉଥିଲା । ପ୍ରତ୍ୟେକ ଗଛକୁ ବୃକ୍ଷ ଦେବତା ଭାବେ ପୂଜା କରିବାର ପଦ୍ଧତି ମଧ୍ୟ ଭାରତୀୟ ସମାଜରେ ପ୍ରଚଳିତ ଥିଲା । ଏବେ ବି ଆମେ ତାହାର ନମୁନା ଦେଖିବାକୁ ପାଉ ।

ଖୁବ୍ ସରଳ ଭାବରେ ବୁଝିବାକୁ ହେଲେ ଆମର ପ୍ରତିଦିନର କାମକୁ ଭଲଭାବରେ ଦେଖାଯାଇ ପାରେ । ପ୍ରତିଦିନ ସକାଳୁ ଶେଯ ଛାଡ଼ିବା ପରେ ଭଲ ଭାବରେ ମୁହଁ ଧୋଇ ଦାନ୍ତ ଘଷୁ । ପୂର୍ବରୁ ମଣିଷ ଗଛ ଲତାର ଡାଳକୁ ଦାନ୍ତକାଠି ଭାବେ ବ୍ୟବହାର କରୁଥିଲେ । ସାଧାରଣତଃ ନିମ୍ବ, କରଞ୍ଜ, ଅପମାରଙ୍ଗ, ସାହାଡ଼ା ଦାନ୍ତକାଠି ବ୍ୟବହାର କରିବା ପାଇଁ ଆମକୁ ନିର୍ଦ୍ଦେଶ ଦିଆଯାଇଥିଲା । ପିତା ବା କଷା ଦାନ୍ତକାଠିର ରସ ବାଜିଲେ ଦାନ୍ତର ମାଢ଼ି ଟାଣ ହେବା ସହିତ ପାଟିରୁ ଜୀବାଣୁ ନଷ୍ଟ ହୋଇ ଥାଆନ୍ତି । ତେଣୁ ପାଇରିଆ, ଦାନ୍ତ ପୋକଖିଆ, ଜିଭଧରା ପ୍ରଭୃତି ରୋଗରୁ ମୁକ୍ତି ମିଳେ । ଆଜିର ମଣିଷ ଦାନ୍ତକାଠି ବଦଳରେ ବ୍ରସ, ପେଷ୍ଟ ବ୍ୟବହାର କରି ଅଧିକନ୍ତରେ ଚାଲୁଆ ହୋଇ ଯାଉଛି । ଅଧିକନ୍ତୁ କେତେଗୋଟି ଗାଆଁ, ସହରରେ ନିମ, କରଞ୍ଜ, ସାହାଡ଼ାଗଛ ଆଜି ଦେଖିବାକୁ ମିଳୁନି । ନିମ୍ବ ଦାନ୍ତକାଠି ବ୍ୟବହାର ପୁରୁଷ ପକ୍ଷରେ ଅତ୍ୟନ୍ତ ଉପକାରୀ । ଏହା ଅଧିକ ଧାତୁକ୍ଷୟ ତଥା ପୁରୁଷତ୍ୱ ନଷ୍ଟଭଳି ମାରାତ୍ମକ ବ୍ୟାଧି କବଳରୁ ରକ୍ଷା କରିଥାଏ ।

ଦାନ୍ତ ଘଷିବାପରେ ଗାଧୋଇବା ଅନ୍ୟଏକ ମୁଖ୍ୟ ଓ ଶ୍ରେଷ୍ଠ କାର୍ଯ୍ୟ । ଅଗାଧୁଆ କୌଣସି ମନ୍ଦିରକୁ ଯାଇ ପାରିବେ ନାହିଁ ବୋଲି କୁହାଯାଇଥିବାରୁ ଭଲଭାବରେ ମଣିଷ ଗାଧୋଇଥାଏ । ଗାଧୁଆ ଭଲ ହେଲେ ଦିନଯାକ ମନ ପ୍ରଫୁଲ୍ଲିତ ରହେ ଓ କାମ କରିବାର ସ୍ପୃହା ଆସେ । ଗାଧୋଇବା ପୂର୍ବରୁ ଦେହରେ ଖୁବ୍ ଭଲଭାବରେ ତେଲ ମାଲିସ୍ କରାଯାଉ-ଥିଲା । ମୁଣ୍ଡ ପାଇଁ ଘଣି ତେଲ ବା ବ୍ରାହ୍ମୀ ତେଲ ଓ ଦେହପାଇଁ ସୋରିଷ ତେଲର ବହୁଳ ବ୍ୟବହାର ଥିଲା । ବିଶୁଦ୍ଧ ସୋରିଷ ତେଲ

ବ୍ୟବହାର କଲେ ଶର୍ଦ୍ଦି, କାଶ ଜଡ଼ିତ ରୋଗରୁ ମୁକ୍ତି ମିଳିଥାଏ । ବ୍ରାହ୍ମୀ ତେଲର ଗୁଣ ଅପାର । ଏହା ମୁଣ୍ଡରେ ଭଲଭାବରେ ମାଲିସ କରି ଦେଲେ ପିତଦୋଷ, ରକ୍ତଚାପଜନିତ ମୁଣ୍ଡ ବୁଲାଇବା ଧୁଏଁ ଧୁଏଁ ଦୂରେଇ ଯାଏ । ଅପରନ୍ତୁ ବ୍ରାହ୍ମୀଶାଗ ଖାଇଲେ ମଣିଷର ମସ୍ତିଷ୍କ ସୁସ୍ଥ ରହେ ଓ ସ୍ମୃତିଶକ୍ତି ଅମୋଘଭାବରେ ବୃଦ୍ଧି ପାଇଥାଏ । ସୁତରାଂ ଜଣେ ଛାତ୍ର ପକ୍ଷରେ ଏହା ଅମୋଘ ଔଷଧ । ଏହାଛଡ଼ା ବ୍ରାହ୍ମୀଶାଗ ବହୁଳ ପ୍ରକାର ଚର୍ମରୋଗ ଓ କୁଷ୍ଠ ରୋଗ ମଧ୍ୟ ଆରୋଗ୍ୟ କରିଥାଏ । ଅପର ପକ୍ଷରେ ଆଜିର ବଜାରରେ ମିଳୁଥିବା ବହୁଳ ସୁବାସିତ ତେଲ ରୋଗର ବାହକ ମାତ୍ର ।

ପ୍ରତ୍ୟେକ ରୋଗର ମୂଳ କାରଣ ଖାଦ୍ୟ । ଅପମିଶ୍ରିତ ଖାଦ୍ୟ ଖାଇ ଭୟଙ୍କର କୁଷ୍ଠ, କର୍କଟ, ମଧୁମେହ, କାମଳରୋଗରେ ଆମେ ପୀଡ଼ିତ ହୋଇଥାଉ । ଆଜିର ଡାକ୍ତର କହନ୍ତି ଆୟୁର୍ବେଦ ନଗଣ୍ୟ । କିନ୍ତୁ କହିପାରିବେକି କାମଳରୋଗ (jundice) ପାଇଁ ସେମାନଙ୍କ ପାଖରେ ଗୋଟିଏ ମାତ୍ର ଔଷଧ ଅଛି କି ? ନା, ଏଇ କାମଳରୋଗ ଜ୍ୱରହେବାପରୁ ଅଧିକ ଦିନ ରହିଲେ ମୃତ୍ୟୁର ସମ୍ଭାବନା ଖୁବ୍ ବେଶୀ । ଅପରପକ୍ଷରେ ଆୟୁର୍ବେଦରେ କାମଳରୋଗ ପାଇଁ ଅନେକ ପ୍ରକାର ଔଷଧର ବ୍ୟବହାର ପ୍ରଚଳିତ । ସେଗୁଡ଼ିକ ଅତି ସାଧାରଣ ଗଛଲତାର ଚେର, ପତ୍ରରୁ ତିଆରି । ହରଡ଼ ପତ୍ରର ରସ ଓ ମହୁ, କାଠମଞ୍ଜୁଆତି ଚେରକୁ ଚାଉଳଧୁଆ ପାଣିରେ ଧୋଇ ତା' ସହିତ ମହୁ, ଅନାବନା ଶାଗ ଓ ଦୋଳଦନ୍ତ ଦିନକୁ ତିନିଥର କରି ବ୍ୟବହାର କଲେ ତିନିଦିନ ମଧ୍ୟରେ କାମଳ ରୋଗର ପ୍ରାଦୁର୍ଭାବରୁ ନିଶ୍ଚିତ ରକ୍ଷା ମିଳିଥାଏ ।

ଆଜିକାଲି ଅଧିକାଂଶ ଲୋକ ଦିନରେ ରୁଟି ଖାଆନ୍ତି । ଚା, କଫି, ଦୁଧସହିତ ଚିନି ବ୍ୟବହାର କରନ୍ତି ନାହିଁ । ନିୟମିତ କିଛି କିଛି ବଟିକା ଖାଇଥାଆନ୍ତି । ଦିନକୁ ଦିନ ସେମାନଙ୍କର ଶାରୀରିକ ତଥା ମାନସିକ ଦୁର୍ବଳତା ଦେଖା ଦେଇଥାଏ । ଏହା ମଧୁମେହ (diabetes) ରୋଗର ଲକ୍ଷଣ । ଆମର ପ୍ରଚଳିତ ଚିକିତ୍ସାଶାସ୍ତ୍ରରେ ମଧୁମେହ ପାଇଁ ପ୍ରତିଷେଧକ ଉପାୟ ଏବେ ବି କିଛି ନାହିଁ । କେବଳ ଡାକ୍ତର କହନ୍ତି ଅତିରିକ୍ତ ମିଠା

ଖାଇବା ସ୍ୱାସ୍ଥ୍ୟପକ୍ଷେ ହାନିକାରକ ମାତ୍ର; ଆୟୁର୍ବେଦ ଅନୁସାରେ ଆମ ବଳ ବାଡ଼ିରୁ ମଧୁମେହଭଳି କଷ୍ଟ ସାଧ୍ୟ ରୋଗ ପାଇଁ ପ୍ରତିଷେଧକ ମାଗଣାରେ ମିଳିଥାଏ । ମୁଗୁଣ୍ଡ ବେଳେ ବଳରେ ପୋଟାଶିଅମ ପ୍ରଚୁର ପରିମାଣରେ ମିଳେ । ଏହାକୁ ନିୟମିତ ଭାବେ କିଛିଦିନ ବ୍ୟବହାର କଲେ ଶରୀରରେ ମଧୁମେହ ରୋଗ ଦେଖା ଦେଇ ପାରିବ ନାହିଁ । କିନ୍ତୁ ଆମେ ଏହା ଅପକା ଓ ଅଖାଦ୍ୟ ବୋଲି ନାକଟେକି ରୋଗକୁ ହାତଠାରୁ ନିମନ୍ତ୍ରଣ କରିଥାଉ । ଯଦି ମଧୁମେହ ରୋଗରେ କେହି ଆକ୍ରାନ୍ତ ହୋଇ ପଡ଼ନ୍ତି, ସେଥିପାଇଁ ବେଶୀ କିଛି ଚିନ୍ତିତ ହେବା ଅନୁଚିତ । ଅତି କଅଁଳିଆ ଅବସ୍ଥାରେ ଥିବା ଜାମୁକୋଳିର ରସ ଗୋଟିଏ କୁ ଗିଲାସରେ ମିଳସେ ମାତ୍ରାରେ ଦିନକୁ ତିନିଥର ପିଆଯାଇପାରେ । କ୍ରମାଗତ ଏକୋଇଶଦିନ ଏହିପରି କଲେ ସୁଫଳ ମିଳିବାରେ ଦ୍ୱିଧା ନାହିଁ । ବାଡ଼ିବଗିଚାର ଗୁଡ଼ୁମୂଳୀ ( ଗୁଡ଼ମାସ ) ଲତାର ପତ୍ର ମଧ୍ୟ ମଧୁମେହ ରୋଗର ଏକ ଅବ୍ୟର୍ଥ ଔଷଧ । ଏତଦ୍ ବ୍ୟତୀତ ବଣ ଜଙ୍ଗଲର ଗଛପତ୍ରରୁ ପ୍ରସ୍ତୁତ ସପ୍ତରଙ୍ଗୀ ନାମକ ଔଷଧ ମଧ୍ୟ ମଧୁମେହର ପ୍ରକୃଷ୍ଟ ଔଷଧ ।

ବାଡ଼ି ବଗିଚା ବାଡ଼ରେ ଥିବା ବାଇଡ଼ଙ୍କ ଗଛକୁ କିଏ ନଜରେ । ଥରେମାତ୍ର ଦେହକୁ ଲାଗିଲେ ଦଫା ରଫା ହୋଇଯିବ । କିନ୍ତୁ ପ୍ରତ୍ୟେକ ଅବଗୁଣରୁ ହିଁ ଗୁଣର ସୃଷ୍ଟି ନିଶ୍ଚେ । ବାଇଡ଼ଙ୍କ ଫଳର ରସ, ମଞ୍ଜି ବ୍ୟବହାର କରି ମଧୁମେହ, ଭୟାନକ କର୍କଟ ରୋଗକୁ ସମୂଳେ ବିନାଶ କରନ୍ତିଏ । ବାଇଡ଼ଙ୍କ ଗଛକୁ ସଂସ୍କୃତରେ "ବାନରୀ କୃତ୍ୟ" ନାମରେ ନାମିତ କରାଯାଏ । "ବାନରୀ ମୋଦକ" ବାତ, ଅର୍ଶ ପ୍ରଭୃତି ରୋଗରେ ଫଳପ୍ରଦ ।

ସାଧାରଣତଃ ଗାଆଁ ଗହଳରେ ଏବେ ବି କୁଆଁଟିଏ ଜନ୍ମହେଲେ ଏକୋଇଶ ଦିନ ମଧ୍ୟରେ ତିନିଥର ପଞ୍ଚମେ ପାଣି ( ଗବ, ବାଇଗବ, ବାସଙ୍ଗ, ଚେଙ୍ଗ, ଓକାସ ) ରେ ଭଲଭାବେ ଗାଧୋଇ ଦିଆଯାଏ । ଫଳରେ କୁଆଁର କଅଁଳ ଦେହକୁ ବାତ, ପିତ୍ତ, କଫ ଓ ଚର୍ମରୋଗ ଆଦିରୁ ପ୍ରତିଷେଧକ ଶକ୍ତି ମିଳିଥାଏ । ତୁଳସୀ ପତ୍ର ରସ ଓ ମହୁ କମ୍ବା ବାସଙ୍ଗ

ଫୁଲର ରସ ଓ ମଧୁ ଖାଇଲେ ଖୁଣେ ପର୍ଯ୍ୟ କାଶ ଅନେ ଅନେ ଛାଡ଼ଯାଏ । ବଜାରରେ ମିଳୁଥିବା "ଓସିମେଲ୍" ନାମକ ଔଷଧ ଏହାର. ଜ୍ଵଳନ୍ତ ଉଦାହରଣ ।ଅଳ୍ପକାଶ ଭଳ ମାରାତ୍ମକ ରୋଗ କବଳରୁ ଶିଶୁକୁ ଏହା ରକ୍ଷା କରିପାରେ ।

ଆଜ ଆମେ ଖାଦ୍ୟ ସମସ୍ୟାର ଦୂରୀକରଣ ପାଇଁ "ସବୁଜ ବିପ୍ଳବ"ର ଆଶ୍ରୟ ନେଇଅଛୁ । ବହୁଳ ରସାୟନିକ ପ୍ରୟୋଗ ଓ ଅଧିକ ଅମଳକ୍ଷମ ଶସ୍ୟ ଆମର କାମ୍ୟ; କିନ୍ତୁ ଏହାଦ୍ୱାରା ମାଟିର ଉର୍ବରତା ଦିନକୁ ଦିନ କ୍ଷୟପ୍ରାପ୍ତ ହୋଇଯାଉଛି । ଆମେ ଖାଦ୍ୟରୂପେ କେବଳ ବିଷ ଖାଇ ଚାଲିଛୁ । ଫଳରେ ପ୍ରତିଦିନ ଡାକ୍ତରଙ୍କ ପରାମର୍ଶ ଦରକାର । ଅତି ସାଧାରଣ ରୋଗ ଭାବରେ ଦେଖା ଦେଉଛି ଅଗ୍ନିମାନ୍ଦ୍ୟ, ଅମ୍ଳଶୂଳ, କୋଷ୍ଠକାଠିନ୍ୟ, ଅର୍ଶ, ଉଦର ପ୍ରଭୃତି । କୌଣସି ଗୋଟିଏ ରୋଗକୁ ଭଲ କରିବା ପାଇଁ ଔଷଧ ବ୍ୟବହାର କଲେ ତାହା ଅନ୍ୟ ଏକ ରୋଗକୁ ଜନ୍ମ ଦେଉଅଛି । ଆମେ ଜଣେ ଜଣେ ରୋଗବାହକ ଭାବେ ବଞ୍ଚି ରହିଛେ । ଦିନକୁ ଦିନ ଆୟୁଷ "କମିଗଲା ଷାଠିଏ" ବୋଲି କୁହା-ଯାଉଛି; କିନ୍ତୁ ଏହି ମାଟିର ପୁଅମାନେ ଶତାୟୁ ଥିବାର ଶହ ଶହ ପ୍ରମାଣ ଆମ ପୋଥି ପୁରାଣରେ ଲେଖା ଯାଇଛି । ଅବଶ୍ୟ ଆଜିର ମଣିଷ ପକ୍ଷେ ତାହା ମିଥ୍ୟା ଓ ଅବିଶ୍ୱାସ୍ୟ । କିନ୍ତୁ ପ୍ରତିଦିନ ସକାଳୁ ଉଠି କିଛି ତ୍ରିଫଳା ପାଣି (ହରିଡ଼ା, ବାହାଡ଼ା, ଓ ଅଁଳା) ପିଇଲେ ଅଗ୍ନିମାନ୍ଦ୍ୟ, କୋଷ୍ଠକାଠିନ୍ୟ ଦୂରହୋଇ ଆୟୁ ବୃଦ୍ଧିହୁଏ । ତେଣୁ କୁହାଯାଏ—

"ଅରେ, ହରିଡ଼ା,
ସକଳ କାର୍ଯ୍ୟରେ ଲୋଡ଼ର ଲୋଡ଼ା ।"

ହଁ, ଆମର ବା ଏତେ କଥାରେ ମୁଣ୍ଡ ଖେଳାଇବାର କ'ଣ ଅଛି ? ସମର କାମ ତ ଦିନକୁ ଦିନ ବଢ଼ି ଚାଲିଛି । ସେ ବାଟରେ ଆମକୁ ଡାକିଲେଣି । ନେଇ କୋଉଠି କୋଉଠି ଥୋଇବ, ଜାଗା ରଖିବ ।

ଆଉ ଟିକିଏ ଚେଷ୍ଟା କଲେ ଆମକୁ ଆଶ୍ଚର୍ଯ୍ୟ ହେବାକୁ ହେବ ନିଶ୍ଚୟ । ବାଡି ବଗିଚାରେ ଉଠିଥିବା କଲରା ଲତାର ପତ୍ର ବାଟି ପିଇଲେ ସମସ୍ତ ପ୍ରକାର ବିଷଜନିତ ବ୍ୟାଧିରୁ ଅଶୁ ଉପକାର ମିଳିଥାଏ । ଏପରି କି ପାଗଳା କୁକୁର କାମୁଡ଼ା ପାଇଁ ପ୍ରତିଦିନ ଏକ ଗ୍ଲାସ କରି ସୂର୍ଯ୍ୟୋଦୟ ପୂର୍ବ ଓ ଠିକ୍ ପରେ କଲରା-ପତ୍ର ରସ ସେବନ କଲେ ତିନି ଦିନରେ ଉତ୍ତମ ଫଳ ମିଳିଥାଏ । ଅନାବନା ମୁଥା ଘାସ ଓ ଦୁବଘାସର ରସ ମଧ୍ୟ ସାପ କାମୁଡ଼ା ପାଇଁ ଖୁବ୍ ଫଳପ୍ରଦ ଓ ବହୁ ପରୀକ୍ଷିତ ଔଷଧ । ପାତାଳ ଗରୁଡ଼-ମୂଳ ନାଗସାପ ଭଳି ବିଷାକ୍ତ ସାପର ବିଷ ପ୍ରତିକ୍ରିୟାକୁ ଖୁବ୍ ଶୀଘ୍ର ନଷ୍ଟ କରିଦିଏ ।

ଆମ ଦେହର କୌଣସି ଅଂଶରେ ଟିକିଏ ଖଣ୍ଡିଆ ହେଲେ ସାଙ୍ଗେ ସାଙ୍ଗେ ଡାକ୍ତରଙ୍କ ପରାମର୍ଶ କରି ଧନୁଷ୍ଟଙ୍କାର ପ୍ରତିଷେଧକ ଇଞ୍ଜେକ୍ସନ ନେଇଥାଉ ତଥା ଅନ୍ୟାନ୍ୟ ଔଷଧ ବ୍ୟବହାର କରିଥାଉ । କିନ୍ତୁ ବାଡ଼ି ବଗିଚାର ଘାସ ( ବିଶଲ୍ୟକରଣୀ, ରକ୍ତଖାଇ ) ରସ ଏ କ୍ଷେତ୍ରରେ ଅବ୍ୟର୍ଥ ଔଷଧ । କମଳା ଓ ଲେମ୍ବୁର ରସ ପୁରାତନ ଘାଆ, ବନ୍ତ, ମିଳମିଳା, ଝାଡ଼ଫୁଟି ପାଇଁ ଏକାନ୍ତ ଉପଯୋଗୀ ଔଷଧ ରୂପେ ବ୍ୟବହୃତ ।

ଆମ ଦେଶରେ ଦେଖା ଦେଇଥିବା ଦ୍ରୁତ ଜନ ସଂଖ୍ୟା ବୃଦ୍ଧି ଏକ ମାରାତ୍ମକ ବ୍ୟାଧି । ଏହାର ନିରାକରଣ ପାଇଁ ବିଭିନ୍ନ ପ୍ରକାର ଯୋଜନା ମାଧ୍ୟମରେ ଶହ ଶହ କୋଟି ଟଙ୍କା ଖର୍ଚ୍ଚ କରାଯାଉଅଛି । ଜନ୍ମ ନିୟନ୍ତ୍ରଣ ଅପରେସନର ବହୁଳ ମାତ୍ରାରେ କରାଯାଉଅଛି । ଖର୍ଚ୍ଚ ତୁଳନାରେ ସଫଳତା ମିଳୁଛି କେତେ । ଅପରେସନ ଜନିତ ଅପକାର ମଧ୍ୟ ବାଦ୍ ଦେଇହେବ ନାହିଁ । ମାତ୍ର ଦୂର ଅତୀତକୁ ଫେରିଗଲେ ଦେଖିବା ସେଇ ଗୁରୁକୁଳରେ ଅଚ୍ଛେଦ୍ୟ କ'ଣ ଜଙ୍ଗଲର ଗଛ ଲତାକୁ ବ୍ୟବହାର କରି ଆଶ୍ଚର୍ଯ୍ୟ ଧରଣର ପ୍ରାକୃତିକ ଗର୍ଭନିରୋଧ ଓ ଜନ୍ମନିୟନ୍ତ୍ରଣ ଶିକ୍ଷା ଦେଉ ଥାଉଥିଲେ । ସାଧାରଣ କାଠଚମ୍ପା (ଧଳା) ପତ୍ରର ରସ ସେବନ କଲେ

ପୁରୁଷର ପ୍ରାକୃତିକ ଉପାୟରେ ପ୍ରଜନନ ଶକ୍ତି ହ୍ରାସ ପାଇଥାଏ । କେବଳ ଭାରତରେ ନୁହେଁ, ପୃଥିବୀର ଅନ୍ୟାନ୍ୟ ଦେଶରେ ମଧ୍ୟ ଆୟୁର୍ବେଦ ପଦ୍ଧତିରେ ପରିବାର ନିୟନ୍ତ୍ରଣ ବ୍ୟବସ୍ଥାର ପ୍ରଚଳନ ଥିଲା । ୧୯୭୮ ମସିହାରେ ଚୀନ ଦେଶର ଆୟୁର୍ବେଦ ଶାସ୍ତ୍ରୀମାନେ ମତ ଦେଲେ ଯେ, କପା ମଞ୍ଜିର ହଳଦିଆ ତେଲକୁ ବ୍ୟବହାର କରି ପୁରୁଷମାନଙ୍କ ପ୍ରଜନନ ଶକ୍ତି ହ୍ରାସ କରାଯାଇଥାଏ ।

ବାଡ଼ ବଗିଚାର କଖାରୁ, ଛଚନ୍ଦ୍ରାଜାତୀୟ ଲତାର ଚେର ବ୍ୟବହାର କରି ସୁବିଧାରେ ଗର୍ଭପାତ କରାଯିବାର ଉଦାହରଣ ଏବେ ବି ବହୁଳ । ଗର୍ଭପାତ ନିରୋଧ ଓ ସୁଖପ୍ରସବ ଶକ୍ତି ମଧ୍ୟ ଗଛ ଲତାର ଅଭାବ ନାହିଁ । ଶତାବରୀ ଲତାର ମୂଳ ବ୍ୟବହାର କଲେ ଆଶୁ ଫଳ ମିଳେ । ତନ୍ମଧ୍ୟରୁ ମିଳୁଥିବା ଶତାବରୀ-କ, ଶତାବରୀ-ଖ, ଶତାବରୀ-ଗ ଓ ଶତାବରୀ-ଘ ନାମକ ରାସାୟନିକ ଗୁଡ଼ିକରେ ଯାପୋଜନ ଭଳି ପଦାର୍ଥ ପ୍ରଚୁର ପରିମାଣରେ ମିଳେ । ଏହା ପୁଷ୍ଟିକାରକ ତଥା ରକ୍ତ ଜନିତ ରୋଗ ନିରାକରଣରେ ଉପାଦେୟ ଔଷଧ ।

ଆବର୍ଜନାମୟ ଦନ୍ତଦନ୍ତିଆ ଜଳାଶୟ ପାଖରେ ଉଠିଥିବା ଥାଲକୁଡ଼ି ଓ ସୁନୁସୁନିଆ ଶାଗର ଗୁଣ କମ୍ ନୁହେଁ । ଏ ଗୁଡ଼ିକ ଦୁଃସାଧ ମସ୍ତିଷ୍କ ଜ୍ୱର ଓ ପୁରାତନ ମ୍ୟାଲେରିଆ ଭଳି ରୋଗ ଦାଉରୁ ଆମକୁ ରକ୍ଷା କରିଥା'ନ୍ତି । ପ୍ଲାସ୍ମୋଡ଼ିୟମ୍ ଭାଇଭାକ୍ସ ଓ ପ୍ଲାସ୍ମୋଡ଼ିୟମ୍ ଫେଲସେରମ୍ ଜାତୀୟ ଭୂତାଣୁ ବିରୁଦ୍ଧରେ ଏମାନେ ପ୍ରଧାନ ନିବାରକ ଭାବେ ପରିଚିତ ।

ଧର୍ମ ନାମରେ ଆୟୁର୍ବେଦୀୟ ପ୍ରତିଷେଧକର ନିତ୍ୟ ନୈମିତ୍ତିକ ବ୍ୟବହାର ନୂଆ ନୁହେଁ । ପ୍ରତ୍ୟେକ ଓଡ଼ିଆ ଘରେ ସକାଳ ସଞ୍ଜରେ ଠାକୁର ପୂଜା କେଉଁ ଅନାଦିକାଳରୁ ଚାଲି ଆସିଅଛି । ଘରେ ବ୍ୟବହାର କରାଯାଉଥିବା ଧୂପ ଝୁଣା ଓ ଗୁଗୁଳର ଏକ ମିଶ୍ରଣ ଧୂପ ଗନ୍ଧରେ ବସନ୍ତ, ହାଡ଼ଫୁଟି, ମିଳିମିଳା ପ୍ରଭୃତି ମାରାତ୍ମକ ରୋଗ ନଷ୍ଟ ହୋଇଥା'ନ୍ତି ।

ଗୁଜୁଳକୁ ଏକ ଔଷଧ ଭାବେ ବ୍ୟବହାର କଲେ ପୁରୋତନ ପେଟରୋଗ, ପେଟ ଘାଆ, ଆଣ୍ଠୁ ଗଣ୍ଠି ବାତ ପ୍ରଭୃତି ରୋଗରେ ସୁଫଳ ମିଳିବା ବହୁ ପରୀକ୍ଷିତ ।

ଏବେ ମଧ୍ୟ ଆମ ବଣ ଜଙ୍ଗଲର ଅରଣ୍ୟବାସୀମାନେ ସେଇ ଆୟୁର୍ବେଦ ପଦ୍ଧତିର ଅନୁସରଣରେ ଆମ ଅପେକ୍ଷା ଅଧିକ ସୁସ୍ଥ, ସବଳ, କର୍ମଠ । ଜାମ୍ମୁ କାଶ୍ମୀରର ଆଦିମ ଅଧିବାସୀମାନଙ୍କ ମଧ୍ୟରେ ଆଜି ମଧ୍ୟ "ବଦାଗ୍ରି କାଣ୍ଡ" ଲତାର ବ୍ୟବହାର ଦ୍ୱାରା ଗର୍ଭ-ନିରୋଧ ପ୍ରକ୍ରିୟା ପ୍ରଚଳିତ । ସୁଖର କଥା, ଆମ ସରକାର ଲକ୍ଷ୍ନୌସ୍ଥିତ କେନ୍ଦ୍ରୀୟ ଔଷଧ ଗବେଷଣାଗାରରେ ଏହାର ଉପାଦାନ ଓ ଗୁଣ ଉପରେ ଅନୁସନ୍ଧାନ ଚଳାଇ ଗର୍ଭ ନିରୋଧକର ପ୍ରଚଳନ କରିଅଛନ୍ତି ।

ଚଢ଼େଇ ଗୋଡ଼ ଗଛ କହିଲେ ଆମେ ବୁଝିପାରିବା ନାହିଁ । ଆଜି ସେ ଗଛର ମୂଳ ମଧ୍ୟ ଭାରତରୁ ଚାଲିଗଲାଣି । କାରଣ ଏହାର ରସ ହିଁ, ଇଂରେଜମାନଙ୍କ ସମୟ "କଳାଜ୍ୱର" ପ୍ରାଦୁର୍ଭାବରୁ ରକ୍ଷା କରିବାରେ ସମର୍ଥ ଥିଲା । କିନ୍ତୁ ଓଡ଼ିଆ ପରିଚୟ ଓ ଦେଶପ୍ରେମ ବାହାଦୁର ବସୁ ସାହେବ ପଦବୀ ମୋହରେ ବିଦେଶୀ ହାତରେ ଅମର ଔଷଧ ଟେକି ଦେଇଥିଲେ ।

ଆମେ ଆଗ୍ରହରେ ସାକର କନ୍ଦମୂଳକୁ ଖାଇବାକୁ ଥାଉ । ଏହା ଖାଇବାକୁ ଖୁବ୍ ମଧୁର । ସାକରକନ୍ଦ ରସରୁ ମିଳୁଥିବା ଉପାଦାନକୁ ପଦାର୍ଥ କ୍ୟାମ୍ପଟୋଥେସିନ୍ ଦୁରାରୋଗ୍ୟ କର୍କଟ ରୋଗରେ ଉତ୍ତମ ଫଳ ଦେଖାଇବାର ଉଦାହରଣ ମିଳୁଛି ।

ପିଲାମାନଙ୍କ ପକ୍ଷରେ ହେଉଥିବା କୃମିଜନିତ ରୋଗ ଅତି-ସାଧାରଣ । ବଜାରରୁ ଔଷଧ କିଣି ବ୍ୟବହାର କଲେ ଉକ୍ତ ପ୍ରକ୍ରିୟାର ସୂଚନା ମଧ୍ୟ ମିଳେ । କିନ୍ତୁ ବଡ଼ଗିଲ ସୋମରାଜ ମଞ୍ଜିର ଗୁଣରୁ ବ୍ୟବହାର

କରି ଭୂମି ନାଶ କରିବା ଖୁବ୍ ସହଜ । ୧୯୭୩-୭୫ ମଧ୍ୟରେ ଏହା ପରୀକ୍ଷାକରାଯାଇଥିଲା ଧଳା ମୂଷାମାନଙ୍କ ଉପରେ ।

ଆମପାଇଁ ବଣ ଜଙ୍ଗଲର ଉପକାର କେତେ କହିବା । ସେ ତ ଅପାର । କିନ୍ତୁ ଆମେ ଉପକାରୀଙ୍କୁ ବାଟରେ ମାରିବାରେ ବ୍ୟସ୍ତ । ଆଜି ଜଙ୍ଗଲର ବଂଶ ଶେଷ ହୋଇ ଜଙ୍ଗଲ ସଭ୍ୟତା ମଧ୍ୟ କ୍ରମେ ଅତୀତର ସ୍ମୃତିକୁ ଚାଲିଯାଉଛି । ବଣଜଙ୍ଗଲ ଲୋପକରି ଆମେ ଧନୀ ହେବାର ସ୍ୱପ୍ନ ଦେଖିବାରେ ମସଗୁଲ । ଏଣେ ଯେ ମୁଣ୍ଡଉପରେ ବିଷାକ୍ତ ଅଙ୍ଗାରକାମ୍ଳ ଓଜନ ଦୂଷିତ ବାୟୁର ମୃତ୍ୟୁଜାଲ ହୋଇଗଲାଣି ତାହା ବୁଝିବାକୁ ବେଳ ନାହିଁ । ଦିନକୁଦିନ ପୃଥିବୀରେ ଉତାପବୃଦ୍ଧି ପାଇବା ସହିତ ବୃଷ୍ଟିପାତ ହ୍ରାସପାଇବାରେ ଲାଗିଛି । ସତେ ଯେମିତି କାଳର କରାଳ ଭଇଁସି ଆମକୁ ହାତଠାରି ଡାକୁଛି "ହେ ମୂର୍ଖ ! ଅଭିମାନୀ ମାନବସମାଜ ! ତୁମର ଜୀବନ ଶେଷ ହୋଇ ଆସିଲାଣି । ପାପ ଲଭିପିବାକୁ ଡେରି ନାହିଁ, ଆଜଠୁଁ ସାବଧାନ ହୁଅ । ବଂଧୁର ବଂଶ ନାଶ କରି ନିଜ ବଂଶକୁ ନିମନ୍ତ୍ରଣ କର ନାହିଁ ।"

ହଁ, ଭାଗବତ କହେ

"ଯେ ମାଗେ ପରର ମନ୍ଦ

ତା ମନ୍ଦ ପାଖନ୍ତ ଗୋବିନ୍ଦ"



# ଗଲେଣି ତୋ ସାଥିରୁ ଯେତେକ ଜନ

ପଚିଶଟି ବସନ୍ତ ଦିନର ନହେଲେ ମଧ୍ୟ ସମ୍ପୂର୍ଣ୍ଣ ନୂଆ ମଧ୍ୟ ନୁହେଁ । ଆଜକୁ ପ୍ରାୟ ସତେଇଶ ବର୍ଷ ତଳର କଥା । କଲେଜ ଜୀବନର ମଧ୍ୟାହ୍ନ । ବିଜ୍ଞାନର ଛାତ୍ର ହିସାବରେ ସହପାଠୀମାନଙ୍କ ଗହଣରେ ଖୁବ୍ ଭଲ ନାଆଁ, ଲେଖା ଓ ବକ୍ତୃତା ପ୍ରତିଯୋଗିତାରେ ପୁରସ୍କାର ପାଇବାର ଗୌରବ ଥାଏ । ମନରେ ବୈଜ୍ଞାନିକ ତଥ୍ୟ ସମ୍ବଳିତ ଗ୍ରନ୍ଥ ପାଇଁ ଅନେକ ଆଶା । ପ୍ରତି-ଯୋଗିତାରେ ଯୋଡ଼ାଯୋଡ଼ିକରି ବନେଇଚୁନେଇ ଲେଖିବାର ଆଗ୍ରହ କୌଣସି କଳ୍ପନା ମଧ୍ୟରେ ରହିପାରୁନଥାଏ । ଶ୍ରେଣୀ ଗୃହ ହେଉ ବା ଛାତ୍ରାବାସ କାର୍ଯ୍ୟାଳୟ ହେଉ ମୋର ପୂଜ୍ୟ ଗୁରୁମାନଙ୍କୁ ଅନେକ ପ୍ରଶ୍ନ ପଚାରୁଥାଏ । ସେମାନେ ମଧ୍ୟ ପୁତ୍ରବତ୍ ସ୍ନେହ ଦେଖାଇ ଉତ୍ତର ଦେବାରେ କୁଣ୍ଠାବୋଧ କରୁନଥାନ୍ତି । ଆଜି ସେମାନେ କର୍ମକ୍ଷେତ୍ରରୁ ଅବସର ନେଇ କାହିଁ କେତେ ଦୂରରେ, ତଥାପି ସେଦିନର ଗୁରୁଗମ୍ଭୀର ସ୍ୱରରେ ଉତ୍ତର ମୋ କାନରେ ପ୍ରତି ସେକେଣ୍ଡରେ ଶୁଭି ଯାଉଛି । "ପ୍ରକୃତ ମଣିଷ ହେବା ଖୁବ୍ କଷ୍ଟସାଧ୍ୟ ହେଲେହେଁ ନିଜର ଆୟତ୍ତାଧୀନ, ସୁଯୋଗ ହାତଛଡ଼ା କରନାହିଁ, କାରଣ ଏ ସୃଷ୍ଟିର ଯେଉଁ ବିରାଟ ଇତିହାସ ଆମେ ଆଜି ପଢ଼ିବାକୁ ପାଉଛେ ତାହା ମଣିଷର ଅମର ଲେଖନୀ ପ୍ରସୂତ । ଅନ୍ୟାନ୍ୟ ଜୀବ ସତ୍ତ୍ୱ ଅନେକ କ୍ଷେତ୍ରରେ ମଣିଷର ଇତିହାସକୁ ପୁଷ୍ଟ କରିଛନ୍ତି, ତଥାପି ସେମାନେ ପ୍ରକୃତ ସୃଷ୍ଟି ନୁହନ୍ତି । ଅପସୃଷ୍ଟି ମାତ୍ର । ସେମାନେ କେବଳ ସଭ୍ୟତାର ମୂକସାକ୍ଷୀ ସାଜିପାରିଛନ୍ତି, ହେଲେ ଧାଡ଼ିଟିଏ ଲେଖିପାରି ନାହାନ୍ତି । ସବୁର ସୃଷ୍ଟି ସ୍ଥିତି ବିଲୟ ମଣିଷର କଳ୍ପନା ମାତ୍ର । ମଣିଷ ସୃଷ୍ଟିର ରହସ୍ୟ କେହି ଠିକ୍ ଭାବରେ କହିପାରି ନାହାନ୍ତି । ସବୁକଥା ପଢ଼ିଲେ ଜାଣିହୁଏ" । ଗୁରୁବାକ୍ୟ ଅନ୍ୟଥା ନୁହେଁ, ତଥାପି ମନରେ ଶାନ୍ତି ଆସେନାହିଁ । ଏ ଦେଶର ମହାନ ପରମ[illegible] କହି ଅଛନ୍ତି "ସବୁ ମଣିଷ ସମାନ ଓ ସମସ୍ତଙ୍କ ଅନ୍ତରରେ ଈଶ୍ୱର ସମାନ ଭାବରେ ବସିଥାଆନ୍ତି", ତେବେ ଆଜି ମଣିଷ ମଣିଷ ମଧ୍ୟରେ ଏତେ ଫରକ୍ କାହିଁକି ? ଜଣେ ସେଇ ସମାନ ପରିବେଶରେ ଖୁବ୍ କୃତବିଦ୍ୟ ହୋଇ ବାହାର ଆସିଲାବେଳେ ଅନ୍ୟଜଣେ ଶତଚେଷ୍ଟାରେ ପରୀକ୍ଷାଟିରେ ଉତୁରିପାରେନାହିଁ ।

ଜଣେ ସମ୍ପୂର୍ଣ୍ଣଭାବେ ନିରାମିଷାଶୀ ହେବାକୁ ଭଲ ପାଉଥିବାବେଳେ ଅନ୍ୟ ଜଣେ ବିନା ମାଂସରେ ଖାଇପାରେନା । ଗୋଟିଏ ଦେଶର ଲୋକ କୋଇଲା କଳା ହୋଇ ଅତି ଅସୁନ୍ଦର ଦିଶୁଥିବାବେଳେ ଅନ୍ୟ ଦେଶରେ ବାସିନ୍ଦାଙ୍କି ଖୁବ୍ ଉଜ୍ଜ୍ୱଳ ଗୌରବର୍ଣ୍ଣ ନେଇ ଆକର୍ଷଣୀୟ ଚେହେରାର ଅଧିକାରୀ ହୋଇଥାଏ । ପ୍ରତି ଦେଶର ଗୋଟିଏ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତପର୍ଯ୍ୟନ୍ତ ସରଳରେଖାଟିଏ ଟାଣି-ଦେଲେ ତାହା କେତେକ ଅସାମଞ୍ଜସ୍ୟତାର ପ୍ରତୀକ ମଧ୍ୟଦେଇ ଗତି କରିଥାଏ ମାତ୍ର, "ଏତେ ଅସମାନତାର କାରଣ କ'ଣ ?" ପୁନଶ୍ଚ ଆମେ ଦେଖୁ ଯେ, ଭାରତୀୟ ଶିଶୁଟି ଧର୍ମଭୀରୁ ହୋଇ ଉଠୁଥିଲାବେଳେ ସେଇ ସମୟରେ ଜର୍ମାନର ଶିଶୁଟି ଯନ୍ତ୍ରୀଟିଏ ହୋଇ ନିଜକୁ ପ୍ରତିଷ୍ଠା କରିବାକୁ ଆଗେଇଥିଲା", ସବୁଠାରୁ ବେଶୀ ଚମତ୍କାରର ବିଷୟ ଏକା ବାପମାଆଙ୍କର ସମସ୍ତ ସନ୍ତାନ ସବୁଗୁଣରେ ସମାନ ହୁଅନ୍ତି ନାହିଁ । ସମସ୍ତେ ବାପାମାଆଙ୍କର ଗୁଣଗୁଡ଼ିକର ସମାନ ଅଧିକାରୀ ହୋଇପାରନ୍ତି ନାହିଁ, କିନ୍ତୁ ବାପମାଆ ଦୁଇଟି ଭିନ୍ନ ବଂଶ ଭିନ୍ନ ପରିବେଶ ମଧ୍ୟରୁ ଆସିଥାଆନ୍ତି, ତେଣୁ ଅନେକ କ୍ଷେତ୍ରରେ ପିଲାମାନଙ୍କ-ଠାରେ କିଛି କିଛି ମାମୁଁଘରର ଗୁଣମଧ୍ୟ ଫୁଟି ଉଠିଥାଏ । ଏସବୁ ତଥ୍ୟର ପ୍ରଶ୍ନର ଉତ୍ତର ଯଦି ଏପର୍ଯ୍ୟନ୍ତ ସମ୍ପୂର୍ଣ୍ଣରୂପେ ମନଲାଖି ହୋଇ ପାରିନାହିଁ ତଥାପି ଏ କ୍ଷେତ୍ରରେ ବିଜ୍ଞାନର ସାହାଯ୍ୟ ବିନା ଏକ ଇଞ୍ଚ ମଧ୍ୟ ଅଗ୍ରେଇବା ଦୁଃସାଧ୍ୟ ବୋଲି ଅନେକ ପ୍ରକାର ଅଧ୍ୟୟନ ଫଳରେ ଜାଣିବାକୁ ପାଇଥିଲି ।

ବାପମାଆଙ୍କର ନିଜ ପିଲାମାନଙ୍କ ଉପରେ ପ୍ରଭାବକୁ ସମସ୍ତ ଜନେ ବଂଶଗତ ଗୁଣ ଭାବରେ ଅଭିହିତ କରିଯାଇଥାଏ । ଏହା ନିବିଡ଼ ଶାଶ୍ୱତ, ଅମର, ସମୟର କୁଆରରେ ମିଳାଇ ଯାଇପାରେନା କି ପାରିବନି ମଧ୍ୟ । ଏବେ ମଧ୍ୟ ଲୋକମୁଖରେ ଶୁଣାଯାଏ "ଯାହା ବାପ ଚଢ଼େ ଘୋଡ଼ା, ତା' ପୁଅ ଥୋଡ଼ା ଥୋଡ଼ା" ।

ବଂଶାବଳୀ ଇତିହାସ ସମ୍ବନ୍ଧରେ ଯେଉଁ କେତେକ ବରିଷ୍ଠ ବୈଜ୍ଞାନିକ ଆଜି ପୃଥିବୀ ପ୍ରସିଦ୍ଧ ସେମାନଙ୍କ ମଧ୍ୟରେ ଅଛନ୍ତି, ଭାରତୀୟ ବଂଶୋଦ୍ଭବ ଡକ୍ଟର ହରଗୋବିନ୍ଦ ଖୁରାନା, ବୈଜ୍ଞାନିକ ଥମ୍ସନ୍ ପ୍ରଭୃତି ଅଗ୍ରଣୀ । ଥମ୍ସନ୍ କହନ୍ତି "ବଂଶଗତ ଗୁଣ ଏକ ଦୈହିକ ସମ୍ପର୍କ ଯାହାକି ଜନ୍ମ ଦ୍ୱାରେ ସୃଷ୍ଟି କରେ । ବଂଶଗତ ବାପମାଆଙ୍କର ନିଜଠୁଆ ଜନ୍ମିତ ସମ୍ପୂର୍ଣ୍ଣ

ସାମଞ୍ଜସ୍ୟ ରକ୍ଷାକରିଥାଏ", ଅନ୍ୟ କେତେକ ସମସାମୟିକ ଜୀବବିଜ୍ଞାନୀ ମତ ଦିଅନ୍ତି "ବଂଶଗତ ଗୁଣ ଏକ ଅଦୃଷ୍ଟ ଶକ୍ତି ଯାହା ଆମକୁ ପୂର୍ବପୁରୁଷଙ୍କ ଗୁଣ ଆହରଣ କରିବାରେ ସକ୍ଷମ କରିଥାଏ, ଏପରିକି ଅନେକ ପ୍ରକାରର ସମ୍ପୂର୍ଣ୍ଣ-ଭାବେ ବାଧ କରିଥାଏ ମଧ୍ୟ" କିନ୍ତୁ, ସ୍ୱତଃ ପ୍ରଶ୍ନ ଉଠେ "ଏହା ବାସ୍ତବିକ ଓ କିପରି ସମ୍ଭବ ହୁଏ ? ଏହାର ବୈଜ୍ଞାନିକ ଭିତ୍ତିଭୂମି କଅଣ ?" ବିଜ୍ଞାନର କଷାରେ ବଂଶରେ ଗୁଣର ସୃଷ୍ଟି ସମ୍ବନ୍ଧୀୟ ତଥ୍ୟଗୁଡ଼ିକୁ ଦୁଇଟି ମୁଖ୍ୟ ଶ୍ରେଣୀରେ ବିଭକ୍ତ କରାଯାଇ ବିସ୍ତର ଆଲୋଚନା କରାଯାଇପାରେ । ଯଥା :- (କ) ପ୍ରାଣୀ ବିଜ୍ଞାନ ମତବାଦ ଓ (ଖ) ଜୀବରସାୟନ ମତବାଦ, ଉଭୟ ପ୍ରକାର ମତବାଦ ସପକ୍ଷରେ ବହୁତ ବୈଜ୍ଞାନିକ ପ୍ରମାଣ ମିଳିଥାଏ । ପ୍ରଖ୍ୟାତ ବୈଜ୍ଞାନିକ ଡାରଉଇନ୍, ମେଣ୍ଡେଲ, ଓ୍ୱେଷ୍ଟମାନ ପ୍ରଭୃତି ପ୍ରଥମ ପ୍ରକାର ମତବାଦକୁ ସମର୍ଥନ କରୁଥିବା ବେଳେ ଜୀବବିଜ୍ଞାନୀ ତଥା ନୋବେଲ୍ ପୁରସ୍କାର ବିଜେତା ଡକ୍ଟର ହରଗୋବିନ୍ଦ ଖୁରାନା ଦ୍ୱିତୀୟ ମତବାଦ ସପକ୍ଷରେ ସ୍ୱର ଉତ୍ତୋଳନ କରି ପୃଥିବୀବାସିଙ୍କର ଆଖି ଖୋଲି ଦେଇଛନ୍ତି । ଉଭୟ ଶ୍ରେଣୀର ବୈଜ୍ଞାନିକମାନେ ପରୀକ୍ଷା ମାଧ୍ୟମରେ ନିଜର ମତକୁ ପ୍ରତି-ପାଦନ କରିବାର ପ୍ରଚେଷ୍ଟା କରିଆସିଛନ୍ତି । ବର୍ତ୍ତମାନ ସାମ୍ଭାବ୍ୟ ତଥ୍ୟଗୁଡ଼ିକୁ ଆଲୋଚନା କଲେ ଜଣାପାଏ ଯେ,

## (କ) ପୁରାତନ ମତବାଦ—

ପ୍ରଖ୍ୟାତ ପୁରାତନ ସମୟର ପ୍ରାଣୀ ବିଜ୍ଞାନୀମାନଙ୍କ ମତରେ ମାଆର ଗର୍ଭାଶୟରେ ଭବିଷ୍ୟତ ବଂଶଧରମାନଙ୍କ ପାଇଁ ଡିମ୍ବାଣୁଗୁଡ଼ିକ ଗଚ୍ଛିତ ହୋଇ ରହି ଆସିଛନ୍ତି । ଏହି ପ୍ରକ୍ରିୟା ସୃଷ୍ଟିର ଆଦିମାତାଙ୍କର ଗର୍ଭାଶୟଠାରୁ ଆଧୁନିକ ମାଆମାନଙ୍କ ପର୍ଯ୍ୟନ୍ତ ଚାଲି ଆସିଛି । ଡିମ୍ବାଣୁଗୁଡ଼ିକ ଗର୍ଭାଶୟରେ ଭିନ୍ନ ଭିନ୍ନ ସ୍ତରରେ ଗଚ୍ଛିତ ହୋଇ ରହିଥାଆନ୍ତି ଏବଂ ଦରକାର ବେଳେ ଭବିଷ୍ୟତ ବଂଶଧର ରୂପେ ପୃଥିବୀ ପୃଷ୍ଠକୁ ଆସିଥାନ୍ତି । ବୈଜ୍ଞାନିକମାନଙ୍କ ମତରେ ସୃଷ୍ଟିର ପ୍ରଥମ ନାରୀ ଇଭଙ୍କ ଗର୍ଭାଶୟରେ ଏହିପରି ଦୁଇକୋଟି ଡିମ୍ବାଣୁ ରହିଥିଲେ । କାଳକ୍ରମେ ସେହିମାନଙ୍କ ପ୍ରଭାବରେ ଭିନ୍ନ ଭିନ୍ନ ମଣିଷ ସମାଜର ଉତ୍ପତ୍ତି ସମ୍ଭବ ହୋଇ ପାରିଛି । କିନ୍ତୁ, ପ୍ରକୃତରେ ଏ ପ୍ରକାର ମତ-ବାଦର ସତ୍ୟତା ସନ୍ଦିହାନ, ଏହା ଅତି ଅପ୍ରାସଙ୍ଗିକ ବୋଧହୁଏ ମଧ୍ୟ ।

ସୁତରାଂ ପରବର୍ତ୍ତୀ ସମୟର ବୈଜ୍ଞାନିକମାନଙ୍କ ଉପରେ ପ୍ରଭାବ ପକାଇବାରେ ନିତାନ୍ତ ଅସମର୍ଥ ହୋଇ ପଡ଼ିଥିଲା ।

## ଡାରୱିନ୍‌ଙ୍କ ମତବାଦ :

ଡାରୱିନ୍ ପ୍ରଜନନତନ୍ତ୍ରୀ ହେଲେ ମଧ୍ୟ ନିଜର ଭିନ୍ନ ମତବାଦ ପୋଷଣ କରନ୍ତି । ସେ କହନ୍ତି "ପ୍ରତ୍ୟେକ ମାନବ ଶରୀରରେ ବଂଶଗତ ଗୁଣର ପ୍ରଭାବ ଉଭୟ ଶାରୀରିକ ଓ ମାନସିକ ଦୃଷ୍ଟିଗୋଚର ଭାବେ ଦେଖା ଦେଇଥାଏ । ସଜୀବ ଦେହ ଅସଂଖ୍ୟ ଜୀବକୋଷର ସମାହାର ମାତ୍ର । ଏହି ଜୀବକୋଷମାନଙ୍କ ମଧ୍ୟରେ ଥିବା କ୍ଷୁଦ୍ର କ୍ଷୁଦ୍ର ଅଣୁ ଜୀବକୋଷଗୁଡ଼ିକ ପ୍ରାଣୀମାନଙ୍କର ଡିମ୍ବକୋଷକୁ ପ୍ରଭାବିତ କରିଥାଆନ୍ତି । ଯଦ୍ୱାରା ପ୍ରଜନନ ଅଙ୍ଗରେ ବଂଶଗତ ଗୁଣ ସ୍ୱାଭାବିକ ଭାବେ ଦେଖାଦେଇଥାଏ । ଅନେକ ବୃକ୍ଷଲତାଙ୍କ ବଂଶରେ ଏକପ୍ରକାର ଗୁଣ ବହୁ ସମୟ ଯାଏ ସୁପ୍ତ ରହି ଉଠିଥାଏ । ଯେପରି ଧଳାରଙ୍ଗର ଗୋଲାପ ଗଛଟିଏ ଭାରତରୁ ନେଇ ଇଂଲଣ୍ଡ ମାଟିରେ ଲଗାଇଲେ ମଧ୍ୟ ତାହା କେବଳ ଧଳା ଗୋଲାପରେ ପୁରି ଉଠିଥାଏ । ମଣିଷ ଜୀବନରେ ଏହା ମଧ୍ୟ ଖୁବ୍ ସହଜରେ ଅନୁଭୂତ । କେତେକ ଲୋକମାନଙ୍କର ପାରିବାରିକ ଗୁଣଭଳି ଜନ୍ମାନ୍ଧ ହେବା ଓ ଅକାଳରେ ବାଳ ପାଚିବା ଆମପାଇଁ ସୁନ୍ଦର ଉଦାହରଣ ସ୍ୱରୂପ, ଡାରୱିନଙ୍କ ଯୁକ୍ତିରେ ଶକ୍ତିର ଅଭାବ ନଥିଲେ ମଧ୍ୟ ପରବର୍ତ୍ତୀ କାଳର ବୈଜ୍ଞାନିକମାନେ ଏହାର କୌଣସି ନିର୍ଦ୍ଦିଷ୍ଟ ପରୀକ୍ଷାମୂଳକ ପ୍ରମାଣ ଦେଇପାରି ନଥିଲେ, ତେଣୁ ଏହାକୁ ଏକ କାଳ୍ପନିକ ତଥ୍ୟ ଭାବରେ ଗ୍ରହଣ କରିଯିବା ଅଧିକ ସମୀଚୀନ ।

## ଆଧୁନିକ ମତବାଦ :

ଡାରୱିନ୍‌ଙ୍କ ପରବର୍ତ୍ତୀ କାଳରେ ୧୮୯୨ ଖ୍ରୀଷ୍ଟାବ୍ଦରେ ଜର୍ମାନ ପ୍ରାଣୀ ବିଜ୍ଞାନୀ ୱେଇସ୍‌ମ୍ୟାନ୍‌ଙ୍କ ଦ୍ୱାରା ପ୍ରତିପାଦିତ ମତବାଦ ଆଧୁନିକ ବଂଶାବଳୀ ବିଜ୍ଞାନକୁ ସମ୍ୟକ୍ ଭାବରେ ପୁଷ୍ଟ କରିବାରେ ସାହାଯ୍ୟ କରିଥିଲା । ବାସ୍ତବିକ୍ ୱେଇସ୍‌ମ୍ୟାନଙ୍କ ଅବିସ୍ମୃତ ସତ୍ୟତା ଓ ଯୁକ୍ତିକୁ ଆଧୁନିକ କାଳରେ ଏକ ଅମର କୃତିତ୍ୱର ସମ୍ମାନ ଦିଆଯାଉଛି । ପ୍ରକୃତରେ ତାହାଙ୍କ ଥିଲା ବୈଜ୍ଞାନିକ

ପରୀକ୍ଷା ଦ୍ୱାରା ପ୍ରତିପାଦିତ ସତ୍ୟତା, ସୁତରାଂ ଏଥିରେ କଳ୍ପନାର ଅବକାଶ ନାହିଁ ।

ମେଣ୍ଡେଲ୍ ସମସ୍ତ ଜୈବିକ ବସ୍ତୁଗୁଡ଼ିକୁ ମୁଖ୍ୟତଃ ଦୁଇଭାଗରେ ବିଭକ୍ତ କରିଥିଲେ । ପୈତୃକ ଓ ସ୍ୱେଚ୍ଛାକୃତ, ଉପଯୁକ୍ତ ପରୀକ୍ଷା ଦ୍ୱାରା ସେ ଜାଣିପାରିଥିଲେ ଯେ, ପ୍ରତ୍ୟେକ ପ୍ରାଣୀ ଶରୀରର ଜୀବକୋଷ ଗୁଡ଼ିକରେ ପ୍ରୋଟୋପ୍ଲାଜମ୍ ରହିଥାଏ । ଏହି ପ୍ରୋଟୋପ୍ଲାଜମ୍ ହିଁ ଜୀବକୋଷର କେନ୍ଦ୍ର ବିନ୍ଦୁ ଓ ବଂଶଗତ ଗୁଣର ବାହକଭାବେ କାର୍ଯ୍ୟ କରିଥାଏ । ପ୍ରାଣୀ ଜୀବନରେ ଯାହା ସତ୍ୟ ଉଦ୍ଭିଦ ଜଗତରେ ତାହାହିଁ ସତ୍ୟ ଏହା ମେଣ୍ଡେଲ ଜାଣି ପାରିଥିଲେ । ସୁତରାଂ ଉଦ୍ଭିଦଙ୍କ ପାଇଁ ପୁରୁଷାନୁକ୍ରମିକ ଭାବେ ବଂଶଗତ ଗୁଣରେ ପ୍ରଭାବ ଏକ ପ୍ରକାର ସତ୍ୟତା ଦ୍ୱାରା ପ୍ରତିପାଦିତ ହୁଏ । ତାହାହିଁ ମୁଖ୍ୟତଃ ପୈତୃକ ଜୀବକୋଷମାନଙ୍କ ଦ୍ୱାରା ସମ୍ଭବ ହୋଇଥାଏ । କେବଳ ମାତ୍ର ଅଳ୍ପ କେତେକ କ୍ଷେତ୍ରରେ ସାମାନ୍ୟ ପରିବର୍ତ୍ତନର ସମ୍ଭାବନାକୁ ଏଡ଼ାଇ ଦିଆ ଯାଇନପାରେ ।

ପ୍ରତ୍ୟେକ ଶିଶୁର ସୃଷ୍ଟି ପାଇଁ ଆବଶ୍ୟକ ଜଣେ ପିତା (ପୁରୁଷ) ଓ ଜଣେ ମାତା (ପ୍ରକୃତି) । ପୁରୁଷ ଓ ପ୍ରକୃତିର ନୈସର୍ଗିକ ସଂଯୋଗ ହିଁ ନୂତନ ସୃଷ୍ଟିର ମୂଳଦୁଆ ହୋଇଥାଏ । ସଂସର୍ଗ କାଳରେ ପୁରୁଷର ଶୁକ୍ରାଣୁ ସହିତ ସ୍ତ୍ରୀର ଡିମ୍ବାଣୁର ମିଳନ ଘଟିଥାଏ । ସ୍ଥିରହେବା ପାଇଁ ସେମାନଙ୍କ ମଧ୍ୟରେ ଚାଲିଥାଏ ପ୍ରବଳ ସଂଘର୍ଷ । ଏହି ସନ୍ଦର୍ଭରେ "କିଏ ଜିତେ କିଏ ହାରେ" ତାହାହିଁ ନିର୍ଣ୍ଣୟ କରେ ସନ୍ତାନଟି ପୁଅ ନା ଝିଅ ହେବ । ଉଭୟ ଶୁକ୍ରାଣୁ ଓ ଡିମ୍ବାଣୁର ଜିତିବାର ସମ୍ଭାବନା ମଧ୍ୟ ଅନେକ ସ୍ଥଳରେ ସମ୍ଭବ ହୋଇ ଏକାଥରକେ ପୁଅଝିଅ ଉଭୟ ଜନ୍ମ ହେବାର ଅନେକ ସ୍ପଷ୍ଟ ପ୍ରମାଣ ରହିଆସିଛି । ଉପରୋକ୍ତ ପରୀକ୍ଷା ଦ୍ୱାରା ପ୍ରମାଣିତ ହୁଏ ଯେ "ବାପମାଆ ଉଭୟଙ୍କ ଚରିତ୍ର ପ୍ରଭାବ ପିଲାମାନଙ୍କ ଉପରେ ସମାନ ଭାବରେ ପଡ଼ିବାର ସମ୍ଭାବନା ଅଛି", ଏହାହିଁ ପ୍ରକୃତ ସତ୍ୟତା ଓ ଏକ ଅକାଟ୍ୟ ପ୍ରମାଣ ଏବେ ବି ଆମେ କହିବାକୁ ଭୁଲନାହୁଁ "ଅରେ ଝିଲଟା ମାଅର ମୁହଁ ଓ ଗୋଡ଼ରେ ଅଙ୍ଗୁଠି ଗୁଡ଼ିକ ଠିକ୍ ନେଇଆସିଛି" । କେବଳ ନୁହେଁ ମାଅକୁ ବାହକ କରି ପିଲା ମାମୁଁ ଘରର ଗୁଣ କଣ୍ଠ ନେବାକୁ ଚୁକିଯାଏ ନାହିଁ । ସତରେ କେତେ

ସହଜ, ସରଳ ଏ ଜୀବ ସୃଷ୍ଟିର ମୂଳଟି । ସେମିତ୍ରୁନ ଜୀବକୋଷ ଅବୟବ ଗୁଡ଼ିକ ଜନନ କାମରେ ବ୍ୟସ୍ତ ରହୁଥିବାବେଳେ ସ୍ୱେଚ୍ଛାକୃତ ଜୀବକୋଷ ଅବୟବ ଗୁଡ଼ିକ କେବଳ ଶରୀରବୃଦ୍ଧି ହୋଇ ରହିଥାଆନ୍ତି । ସେମାନଙ୍କର କାର୍ଯ୍ୟ ଶରୀରର ବାହ୍ୟଗୁଣ ଗୁଡ଼ିକର ବିକାଶ ସାଧନ ଯଥା :- ଶାରୀରିକ ଗଠନ, ରଙ୍ଗ ଇତ୍ୟାଦି । କେବଳ ସନ୍ତାନର ଅନ୍ତର୍ନିହିତ ଗୁଣଗୁଡ଼ିକ ପୈତୃକ ଓ ବାହ୍ୟ ଗୁଣଗୁଡ଼ିକ ଆଧାରିତ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ପୈତୃକ ଗୁଣଗୁଡ଼ିକ ଜନ୍ମ ପରେ ଜନ୍ମ ଲିପିବଦ୍ଧ ଥାଏ ।

ଅପର ପକ୍ଷରେ ପିତାମାତାଙ୍କର ସମସ୍ତ ପ୍ରକାର ଶାରୀରିକ ଗଠନ ଛୁଆଠାରେ ପ୍ରତିଫଳିତ ହୋଇପାରେ ନାହିଁ । କେତେକ କ୍ଷେତ୍ରରେ ଏହା ସମ୍ପୂର୍ଣ୍ଣ ସମ୍ଭବ ହୋଇଥିଲାବେଳେ ଅନ୍ୟ କେତେକଙ୍କ ପକ୍ଷରେ ଏହାର ସମ୍ପୂର୍ଣ୍ଣ ବ୍ୟତିକ୍ରମ ପରିଲକ୍ଷିତ ହୋଇଥାଏ । ଯେଉଁସବୁ ଗୁଣଗୁଡ଼ିକ ପ୍ରତି-ଫଳିତ ହୁଏ ସେ ସବୁକୁ ସକ୍ରିୟ ଓ ପ୍ରତିଫଳିତ ହୋଇ ପାରୁନଥିବା ଗୁଣ-ଗୁଡ଼ିକୁ ନିଷ୍କ୍ରିୟ ଗୁଣଭାବରେ ନାମିତ କରାଯାଏ । ସକ୍ରିୟ ଏବଂ ନିଷ୍କ୍ରିୟ ଗୁଣଗୁଡ଼ିକୁ ବୁଝିବା ପାଇଁ ଗୋଟିଏ ସହଜ ଉଦାହରଣ ନିଆଯାଇପାରେ, ଅନେକ ପରିବାରରେ ବାପମାଆଙ୍କ ରଙ୍ଗ କଳା ଥିବାବେଳେ ଛୁଆମାନଙ୍କ ମଧ୍ୟରେ ଜଣେ ଅଧେ ଖୁବ୍ ଗୋରାରଙ୍ଗ ପାଇଥାଆନ୍ତି । ଅବଶ୍ୟ କେତେକ ଛୁଆ କଳା ହେବା ନିଶ୍ଚିତ । କେତେକ କ୍ଷେତ୍ରରେ ଖୁବ୍ ଡେଙ୍ଗା ବାପମାଆ ମଧ୍ୟ ଗେଡ଼ା ପିଲାଟିକୁ ଜନ୍ମ ଦେଇଥାଆନ୍ତି । ଏତ ଗଲା ମଣିଷ କଥା । ବଣ ଜଙ୍ଗଲର ଜୀବଜନ୍ତୁଙ୍କ କ୍ଷେତ୍ରରେ ମଧ୍ୟ ଏଭଳି ଗୁଣ ଦେଖାଦେଇଥାଏ । ନନ୍ଦନକାନନର ଦୁଇଟି ସାଧାରଣ ବାଘ ଦମ୍ପତ୍ତିଙ୍କଠାରୁ ତେର ଧଳାବାଘ ଛୁଆ ଜନ୍ମ ହୋଇ ଚହଳ ପକାଇ ଦେଇଥିଲେ । ସେ ଯାହା ହେଉନା କାହିଁକି ବାଘ ଶିଶୁ ଦେହର ରଙ୍ଗ ମିଳାଉ ଥିବନ କି ମିଳାଇ ଥିବନ ପୈତୃକ ପଟାପଟା ଡୋରସବୁ । ମୃଗଛୁଆଙ୍କ ଦେହରେ ବର୍ଣ୍ଣଗତ ଟୋପିଟୋପି ଚିହ୍ନ କି ସୁନ୍ଦର ନ ଦିଶେ ସତରେ । ଆଉ ଟିକିଏ ଅଧିକ ଆଲୋଚନା କଲେ ଆମେ ଦୂରଦର୍ଶନରେ ଦେଖିଛୁ ଓ ଶୁଣିଛୁ ଜଣେ ଶାରୀରିକ ଅକ୍ଷମ ମାଆର ଦୁଇଟି ଛୁଆ ମଧ୍ୟ ତାଙ୍କରି ଭଳି ଶାରୀରିକ ଅକ୍ଷମ । ବାହ୍ୟଗୁଣର ପ୍ରଭାବରେ ବ୍ୟତିକ୍ରମର ସମ୍ଭାବନା ଯେତିକି ଜୀବନ୍ତ ଅନ୍ତର୍ଗୁଣର ପ୍ରଭାବ ସେତିକି ମାତ୍ରାରେ

କହିବ । ତେଣୁ କୁହାଯାଏ "ସୁସ୍ଥ ଘର ପିଲା ସୁସ୍ଥ, ଦୁଷ୍ଟ ଘର ପିଲା ଦୁଷ୍ଟ" କିନ୍ତୁ ଏସବୁ ଆଲୋଚନାରୁ ଆମେ ଜାଣିବାକୁ ପାଇଲେ ବଂଶଗତ ଗୁଣରେ ପ୍ରଭାବ କପରିଭାବରେ ଚଳି ଚାଲିଥାଏ ଓ କେତେପୁରୁଷ ପର୍ଯ୍ୟନ୍ତ ଚାଲି-ପାରେ । ଏ ବିଷୟରେ ଆମକୁ ଅନେକ ବିଦ୍ୱାନ ମାନଙ୍କର ନାଆଁ ଜଣାଥିଲେମଧ୍ୟ ସେମାନଙ୍କ ମଧ୍ୟରେ ଗ୍ୟାଲଟନ୍, ଡାରଉଇନ୍ ଓ ମେଣ୍ଡେଲ୍ ମତବାଦ ଅଧିକ ଗ୍ରହଣୀୟ । ସୁତରାଂ ସେସବୁର ବିଶଦ୍ ଆଲୋଚନା ଏକାନ୍ତ ଉପାଦେୟ ।

ଗ୍ୟାଲଟନଙ୍କ ମତ ଅନୁସାରେ ବଂଶଗତ ଗୁଣରେ ପ୍ରଭାବ ଏକ ସରଳ ଗାଣିତିକ ନିୟମ ଉପରେ ପର୍ଯ୍ୟବେସିତ । ଶିଶୁଟିଏ ସଂସାରକୁ ଆସିବାବେଳେ ମାଆ ପେଟରୁ ବାପମାଆଙ୍କ ଗୁଣର ଅର୍ଦ୍ଧେକ, ଜେଜେବାପା ଜେଜେମାଆଙ୍କ ଠାରୁ ଏକ ଚତୁର୍ଥାଂଶ, ଜେଜେ ବାପାଙ୍କ ବାପମାଆଙ୍କଠାରୁ ଏକ ଅଷ୍ଟମାଂଶ ଏହି କ୍ରମରେ ନେଇ ଆସିଥାଏ । କ୍ରମଶଃ ପୁରୁଷକୁ ପୁରୁଷ ଗୁଣରେ ଅର୍ଦ୍ଧେକ ମାତ୍ରାରେ ହ୍ରାସ ହେବାରେ ଲାଗିଥାଏ । ଯଦି ଶିଶୁଟିର ସମସ୍ତ ଗୁଣଟିକୁ ମିଶାଇ ୧ ଗୁଣ ବୋଲି ଧରାଯାଏ । ତାହାହେଲେ ସେଟୁକ ବଂଶାନୁକ୍ରମ ଭିତରେ $\frac{୧}{୨} + \frac{୧}{୪} + \frac{୧}{୮} + \frac{୧}{୧୬} + \frac{୧}{୩୨} \cdots\cdots$ ଏହି କ୍ରମରେ ରହି-ଥାଏ । ବଂଶଗତ ଗୁଣ କ୍ରମେ କ୍ରମେ କମିଯାଏ କାହିଁକି ? ଏହାର ଉତ୍ତରଟି ଅତି ସହଜ ମିଳାଣଟିଏ । କାରଣ ଆମର ବାପା ଓ ମାଆ ମିଶି ଦୁଇଜଣ, କିନ୍ତୁ ଜେଜେ ବାପା ଓ ମାଆଙ୍କୁ ଦେଖିଲେ ଚାରିଜଣ ହୁଅନ୍ତି ନାହିଁକି, ଚାରି-ଜଣ ଗୋଟିଏ କାମକଲେ ପ୍ରତ୍ୟେକେ କାମଟିର ୧/୪ ଅଂଶ ମାତ୍ର କରିବାକୁ ସମର୍ଥ । ଆଉ ଗୋଟିଏ ପୁରୁଷ ଉପରକୁ ଗଲେ ପାଇବା ଯେ ମୋଟ ଆଠଜଣ ମିଶି ଆମକୁ ସୃଷ୍ଟି କରିଛନ୍ତି । ସୁତରାଂ ତୃତୀୟ ପୁରୁଷ ମାତ୍ର ଆମକୁ ନିଜ ଗୁଣରେ ୧/୮ ଅଂଶ ଦେବାକୁ ସମର୍ଥ । ଅତଏବ ଏହାର ମୂଳ ତଥ୍ୟଟା ବୁଝିବା ଅତି ସହଜ । ପୂର୍ବ ପୁରୁଷଙ୍କ ସଂଖ୍ୟା ବଢ଼ିବାକୁ ଲାଗିଲେ ସେମାନେ ଆମକୁ ଦେଉଥିବା ଗୁଣ ନିଶ୍ଚିତଭାବେ କମିଯିବ ଏଥିରେ ତିଳେମାତ୍ର ଦ୍ୱିଧା ନାହିଁ । ଗ୍ୟାଲଟନ୍ଙ୍କ ଅମର ସୂତ୍ରକୁ ଆଜିର ବର୍ତ୍ତବୈଜ୍ଞମ୍ୟ ବିବାହ ରେ-ଖରିଦେବାରେ ଲାଗିଛନ୍ତି । ଏବେ ସ୍ଥଳେ ଏହାର ଉପଯୋଗିତା ଖୁବ୍ କମ୍

ସମ୍ଭବ । କାରଣ ଜଣେ ଶରଣାର୍ଥୀ ଯୁବକ ଇଂଲଣ୍ଡରେ ଶ୍ୱେତାଙ୍ଗୀଟିଏ ବାଛି ନେଲେ ସେମାନଙ୍କର ଉତ୍ତାପ ଓ ଭୂଗୋଳ ସମ୍ପୂର୍ଣ୍ଣ ବଦଳି ଯାଇଥାଏ । ଏପରି ସ୍ଥଳେ ସାଧାରଣ ନିୟମର ଆଲୋଚନା ବିଶେଷ ଫଳପ୍ରଦ ହେବ ବା କିପରି ।

ଗ୍ୟାଲ୍‌ଟନ୍‌ଙ୍କ ସୂତ୍ରଟି ଅତି ମହତ୍ତ୍ୱର ବୁଦ୍ଧିଦୀପ୍ତ ଥିଲେ ମଧ୍ୟ ବୈଜ୍ଞାନିକ ପରୀକ୍ଷା ଦ୍ୱାରା ପ୍ରତିଷ୍ଠିତ ନୁହେଁ । ଆଧୁନିକ ଜୀବ ବିଜ୍ଞାନୀମାନେ ଗ୍ରହଣ କରୁଥିବା ନିୟମଟି ଅଷ୍ଟ୍ରିଆର ଜଣେ ଧର୍ମଯାଜକ ମେଣ୍ଡେଲ୍‌ଙ୍କ ଦ୍ୱାରା ପ୍ରତିପାଦିତ ହୋଇଥିଲା । ମେଣ୍ଡେଲ୍, ନିଜ ଗୀର୍ଜାର ବଗିଚାରେ ଥିବା ଭିନ୍ନଭିନ୍ନ ଫୁଲଗଛର ସ୍ୱଭାବକୁ ନେଇ ଜୀବନସାରା ନିଜର ପରୀକ୍ଷା ଚଳାଇଥିଲେ । ସେ ୧୮୮୪ ଖ୍ରୀଷ୍ଟାବ୍ଦରେ ମୃତ୍ୟୁବରଣ କରିଥିଲେ ମଧ୍ୟ ତାଙ୍କର ଆବିଷ୍କାର ସମାଦର ପାଇନଥିଲା । ପରବର୍ତ୍ତୀ କାଳରେ ୧୯୦୦ ଖ୍ରୀଷ୍ଟାବ୍ଦରେ ବୈଜ୍ଞାନିକମାନେ ଏହାର ସତ୍ୟତା ପରୀକ୍ଷା କରି ଏହାକୁ "ମେଣ୍ଡେଲ୍‌ଙ୍କ ନିୟମ" ଭାବେ ନାମିତ କରିଥିଲେ । ସେହି ଦିନଠାରୁ ଆଜିଯାଏଁ ତାହା ପାଠ୍ୟପୁସ୍ତକରେ ଏକ ଅଂଶ ହୋଇ ରହିଯାଇଛି ।

"ମେଣ୍ଡେଲ୍‌ଙ୍କ ନିୟମ"କୁ ପ୍ରାଣୀଜଗତରେ ପ୍ରଥମେ ପରୀକ୍ଷାକରି ଦେଖିଥିଲେ କ୍ୟାସେଲ । ସେ କିଛି କଳା ଓ ଧଳା ମୂଷା ଯୋଡ଼ିନେଇ ସଙ୍ଗମ କରାଇଥିଲେ । ପ୍ରଥମଥର ଜନ୍ମ ହୋଇଥିବା ସମସ୍ତ ଶିଶୁ କଳାରଙ୍ଗର ହୋଇଥିଲେ । କିନ୍ତୁ ଦ୍ୱିତୀୟଥର ମିଳିଥିବା ଷୋଳଗୋଟି ଛୁଆମଧ୍ୟରୁ ତିନି-ଗୋଟି କଳା ଓ ଗୋଟିଏ ଧଳା ମୂଷାଛୁଆ ମିଳିଥିଲା । କ୍ରମେ କଳାଛୁଆ ସଂଖ୍ୟା କମି ଯାଉଥିବାବେଳେ ଧଳା ଛୁଆଙ୍କ ସଂଖ୍ୟା ବଢ଼ିବାକୁ ଲାଗିଲା । କେତେକ ପୁରୁଷ ପରେ କଳା ମୂଷା କେବଳ କଳାଛୁଆ ଓ ଧଳା ମୂଷା କେବଳ ଧଳାଛୁଆ ଦେଉଥିଲେ । କିନ୍ତୁ କ୍ୟାସେଲ୍ ମାତ୍ର ମୂଷାମାନଙ୍କର ଚର୍ମବର୍ଣ୍ଣ ପରିବର୍ତ୍ତନ କରି କୌଣସି ନୂତନ ସତ୍ୟତା ପାଇବାରେ ସମର୍ଥ ହୋଇପାରିଲେ ନାହିଁ । ମୂଷା ଓ ମଣିଷ ମଧ୍ୟରେ ବଂଶଗତ ଗୁଣର ପ୍ରଭାବ ସମାନଭାବେ ଗ୍ରହଣୀୟ ।

ଗ୍ୟାଲ୍‌ଟନ୍, ମେଣ୍ଡେଲ ପ୍ରଭୃତି ବିଦ୍ୱାନମାନେ ଜୀବ ସୃଷ୍ଟିର ମୂଳ ପିଣ୍ଡକୁ ଚିହ୍ନି ପାରିନଥିଲେ, ଯାହାକି ୧୯୬୦ ମସିହାରେ ବିଜ୍ଞାନ ଦ୍ୱାରା

ଆବିଷ୍କୃତ ହୋଇ ଦୁନିଆରେ ଚହଳ ପକାଇଛି । ଆଧୁନିକ ଜୀବବିଜ୍ଞାନୀମାନଙ୍କ ମତରେ ପ୍ରତ୍ୟେକ ଜୀବକୋଷର କେତେକ ଜୀବଅଣୁ ବା ଜିନ୍ ଦ୍ୱାରା ପ୍ରସ୍ତୁତ । ଜିନ୍‌ଗୁଡ଼ିକ କେତେକ ରାସାୟନିକ ଅମ୍ଳ ଦ୍ୱାରା ପ୍ରସ୍ତୁତ । ଏଗୁଡ଼ିକ ନ୍ୟୁକ୍ଲିକ ଅମ୍ଳଭାବେ ପରିଚିତ । ନିଉକ୍ଲିକ୍ ଅମ୍ଳଗୁଡ଼ିକ ମୁଖ୍ୟତଃ ଦୁଇଭାଗରେ ବିଭକ୍ତ ଡ଼ି. ଏନ୍. ଏ ଓ ଆର୍. ଏନ୍. ଏ. । ଡ଼ି ଏନ୍. ଏ. ହିଁ ବଂଶଗତ ଗୁଣର ସୃଷ୍ଟି ଓ ସଞ୍ଚାରର ମୂଳପିଣ୍ଡ । ଏସବୁର ଆଲୋଚନା ଅତ୍ୟନ୍ତ ଜଟିଳ ହୋଇ-ଥିବାରୁ ସାଧାରଣରେ ଦୁର୍ବୋଧ ।

ଏତିକି କହିଲେ ଯଥେଷ୍ଟ ହେବ ଯେ, ପୁରାଣକାଳରେ ମୁନିଋଷିମାନଙ୍କ କମଣ୍ଡଳୁର ମନ୍ତ୍ରପାଣିରୁ ମଣିଷଛୁଆ ଜନ୍ମନେବା ଅମୂଳକ ହୋଇପାରେନା ।

—×—

# କଥାକୁହ, କଥାକୁହ କଙ୍କାଳ...........

ମଣିଷ ସମାଜ ଘଣ୍ଟାର ପ୍ରତ୍ୟେକ ସେକେଣ୍ଡରେ ପାଦ ସନ୍ତତ ପାଦ ମିଳାଇ ଆଗକୁ ବଢିବାରେ ଲଗିଛି । ଲକ୍ଷ୍ୟ ତା'ର ଅସୀମକୁ । ତେଣୁ ଦର୍-ବକପୁ ଶବ୍ଦ ମଣିଷ ସଭ୍ୟତାର ଅଭିଧାନରୁ କେବେଠୁଁ ବିଦାୟ ନେଇଗଲେଣି । ସେଇ ଶୂନ୍ୟସ୍ଥାନଟି ପୂରଣ କରୁଛି ଅସୀମର ଆହ୍ୱାନ । "ଯୁଗକୁ ଯୁଗ ଏହି ମତେ" ଚାଲିଆସିଛି । ବିଜ୍ଞାନ ବିଶ୍ୱାସ କରି ଚାଲିଛି ଯୁଗାନ୍ତକାରୀ ପରିବର୍ତ୍ତନର ରଙ୍ଗ ବେରଙ୍ଗ ଛନ୍ଦରେ । ବିଜ୍ଞାନ ଯେତିକି ଯେତିକି ଆଗକୁ ମାଡ଼ିଚାଲିଛି ତା'ର ଅଦ୍ଭୁତ ଆବିଷ୍କାର ଗୁଡ଼ିକ ସେତିକି ସୃଷ୍ଟିତତ୍ତ୍ୱର ଗୂଢ଼ ଖବର ତଳର ହସ୍ତଗତ କରିବାକୁ ସମର୍ଥ ହେଉଅଛି । କ୍ରମଶଃ ଆମ ମନରେ ବିଶ୍ୱାସ ଜମାଟ ବାନ୍ଧି ଆସୁଛି "ପୁଣି କାଳଆ ଲେଉଟିବ" । ଆମେ ଅଯଥରେ ସତ୍ୟଯୁଗର ଆଗମନର ମଙ୍ଗଳଘଟକ ତା'ର ସୂର୍ଯ୍ୟକୁ ଆହ୍ୱାନ ଜଣାଇବା । ଏସବୁ ବିଶ୍ୱାସର ମୂଳିଟି କେଉଁଠି । ଏଗୁଡ଼ିକ ଆମର ପୂର୍ବ ପୁରୁଷ ଗତାସୁ ମନୀଷୀଗଣ ପୋଥି ପତ୍ରରେ ସରଳ ଭାଷାରେ ଲେଖି ଯାଇଛନ୍ତି । ସେଇ ହିଁ ଆମ ସଭ୍ୟତା, ଆମ ସଂସ୍କୃତିର ଜନ୍ମ ଜାତକ । "ଜାତକ" ଶବ୍ଦଟି ଅତି ପ୍ରାଚୀନ । ଏହା ମଣିଷ ଜୀବନର ଏକ ଧନ ମଞ୍ଜୁଷା କହିଲେ ଅତ୍ୟୁକ୍ତି ହେବନାହିଁ । ସବୁଠାରୁ ସଭ୍ୟ ଶିକ୍ଷିତ ମଣିଷଟିଏ ମଧ୍ୟ ନିଜର ଜାତକଟିକୁ ଜୀବନରେ ଉନ୍ନତି, ଅବନତି, ଶତ୍ରୁଜୟ, ମାଲି ମକଦ୍ଦମାରେ ବିଜୟ, ଶୁଭବେଳା ନିର୍ଣ୍ଣୟ କରିବାପାଇଁ ଦେଖି-ବାକୁ ଭୁଲେ ନାହିଁ । ଅବଶ୍ୟ ଜାତକକୁ ଯେ ଆମେ ସବୁବେଳେ ନିର୍ଭୁଲ ଭାବେ ବୁଝିପାରୁ ତାହା ନୁହେଁ । ଅନେକ ସମୟରେ ଓଲଟା ଫଳ ସହିତ ମାନସିକ ତଥା ଶାରୀରିକ କ୍ଳେଶ ପାଇଥାଉ । ତଥାପି ମଣିଷ ଜୀବନରେ ଜାତକର ଭୂମିକା ସର୍ବାଦୌ ଗ୍ରହଣୀୟ । ଏହା କୌଣସି ବିକୃତ ମସ୍ତିଷ୍କର ଚିନ୍ତାଧାରାରୁ ଆସିନାହିଁ ବରଂ ଆସିଛି ଏକ ମହାନ୍ ଗାଣିତିକ ତଥା ବୈଜ୍ଞାନିକ ଆଧାର ମଧ୍ୟରୁ । ଉପଯୁକ୍ତ ପ୍ରୟୋଗ ବ୍ୟତିରେକେ ଫଳ ଯେ ଓଲଟା ତାହା ତ ସ୍ୱାଭାବିକ । ତେଣୁ କୁହାଯାଇଥାଏ "ମଣିଷ ଜୀବନ ପତର ତଳେ ।" ଗୋଟିଏ ମଣିଷ ଜୀବନ ଖଣ୍ଡିଏ ପତରତଳେ ରହିବା ଭଳି ଆଦମ ଯୁଗରୁ

ପ୍ରତେକ ମଣିଷ, ପଶୁପକ୍ଷୀ, ଉଦ୍ଭିଦର ଜୀବନର ଲମ୍ବା ଚଉଡ଼ା ଇତିହାସ ମାଟି ପେଟର ତଳେ ରହିଆସିଛି । ସମୁଦ୍ରର ଝାଡ଼ ପ୍ରତିଘାତ ସହି ନ ପାରି କେବେ କେବେ ସେଗୁଡ଼ିକ ମାଟି ଉପରକୁ ଉଠିଆସି କହି ଯାଉଛନ୍ତି କେଉଁ ଏକ ଅଜଣା ଅଶୁଣା ସମୁଦ୍ରର ଇତିହାସ । ମାଟିତଳର ଜାତକରେ ଲେଖା ମୂଳରେ କୁଣ୍ଡଳୀ କଟାଯାଇ ନ ଥାଏ । ନ ଥାଏ ଏଥିରେ ଦଶା ଅନ୍ତର୍ଦ୍ଦଶାର ଗଣିତ । ସେ ସବୁ ନିଜେ ନିଜେ ଗ୍ରହ କୁଣ୍ଡଳୀର କାମ କରନ୍ତି । କାହାଁରି ପାଟି ଫିଟେନା କି ହାତ ଗୋଡ଼ ଚଳେନା, ସମସ୍ତେ ସମ୍ପୂର୍ଣ୍ଣ ମୃତ୍ୟୁକ ନିର୍ଜୀବ ହାଡ଼, କଙ୍କାଳ, ପାଷାଣ ମୂଠାଏ ରୂପରେ ଦେଖା ଦେଇ ଥାଆନ୍ତି । ମଣିଷ ଏଭ୍ୟଚାର ମାଟିତଳର ଜାତକଟିକୁ ଆମେ ବୈଜ୍ଞାନିକ ରୂପଦେଇ "ଜୀବାଶ୍ମ" "ଜୀବାବଶେଷ" ବା ଫସିଲ୍ ( Fossil ) ଭାବେ ନାମକରଣ କରିଥାଉ । ଫସିଲ୍ ଟେର ଲାଟିନ୍ ଭାଷାରେ ଅର୍ଥ "ମାଟି ଖୋଳି ବାହାର କରିବା ।" ବୋଧହୁଏ ଆମ ଜ୍ଞାନକୁ ସ୍ୱୟଂ ସମ୍ପୂର୍ଣ୍ଣ ଓ ସର୍ବାଙ୍ଗ ସୁନ୍ଦର କରିବା ଉଦ୍ଦେଶ୍ୟ ନେଇ ପୂର୍ବ ପୁରୁଷମାନେ ନିଜକୁ ମାଟିତଳେ ଲୁଚାଇ ଦେଇଥିଲେ ।

"ଜୀବାବଶେଷ" ଗୁଡ଼ିକ ଭିନ୍ନ ଭିନ୍ନ ସମୟରେ ପୃଥିବୀର ବିଭିନ୍ନ ସ୍ଥାନରୁ ମିଳିଥିଲା ଏବଂ ଏବେ ମଧ୍ୟ ମିଳୁଛି । ତାହାର ଦେହରୁ ଜୀବ ଜଗତର ଗଠନ, ପ୍ରକୃତି, ବୟସ, ତଥା ତାହା ଉପରେ ପରିବେଶର ପ୍ରଭାବ ଠିକ ଭାବେ ଜଣା ପଡ଼ିଥାଏ । ଅବଶେଷ ଗୁଡ଼ିକ ନିଜେ ନିର୍ଜୀବ ହେଲେ ମଧ୍ୟ ସଜୀବ ସମାଜର ମୂଳପିଣ୍ଡ ରୂପେ ଯୁଗ ସୃଷ୍ଟି କରିବାକୁ ପଛାଇ ଯାଇନାହାନ୍ତି । ସେଇଗୁଡ଼ିକ ଆମ ସମାଜର ପ୍ରକୃତ ମୂକସାକ୍ଷୀ । ନିଜର ଆଖି ନ ଥାଇ ମଧ୍ୟ ଅମର ଆଖି ଫିଟାଇ ଦିଅନ୍ତି । ସେମାନେ ପାଟି ଫିଟାଇବାର ଶକ୍ତି ହରାଇ ବସିଛନ୍ତି ସତ, ମାତ୍ର ଆଧୁନିକ ବିଜ୍ଞାନ କୁଣ୍ଡରେ ଫୁଟାଇ ବୁଲିଛନ୍ତି ଜୀବନର ଅମରକୋଷର ଶବ୍ଦାବଳୀ ଧନ ଗର୍ଭ ଲତା ଲତା କରି । ସଚେତନ ମୂର୍ଖ କର୍ତ୍ତବ୍ୟ ଛାତ୍ରଙ୍କୁ କର୍ମଚଞ୍ଚଳ ପ୍ରବଣ କରିଥାଉଛି ଅଚେତନ ପାଷାଣ ମୂଠାଏ ।

ବିଭିନ୍ନ ଫସିଲକୁ ନେଇ ବିଜ୍ଞାନାଗାରରେ ପରୀକ୍ଷା କରାଯାଇ ପୃଥିବୀର ଜୀବ ସୃଷ୍ଟିର ଠିକ୍ ଜନ୍ମ ତାରିଖଟି ପାଇବା ଚେଷ୍ଟା ଏବେ ବି ଚାଲୁଛି । ବିତର୍କର ଅନ୍ତ ନାହିଁ । ନିଜସ୍ୱ ମତବାଦର ମଧ୍ୟ ସଂଖ୍ୟା ନାହିଁ । ଏ ଯାବତ୍

ମିଳୁଥିବା ମତବାଦ ଗୁଡ଼ିକୁ ସାଧାରଣତଃ ଚାରୋଟି ଶ୍ରେଣୀରେ ବିଭକ୍ତ କରାଯାଇପାରେ ।

୧ । ଈଶ୍ୱରୀୟ ଶାଶ୍ୱତ ସୃଷ୍ଟି ତତ୍ତ୍ୱ ।
୨ । ବିଶିଷ୍ଟ ସୃଷ୍ଟି ସର୍ଜନା ତତ୍ତ୍ୱ ।
୩ । ଆକସ୍ମିକ ସର୍ଜନା ତତ୍ତ୍ୱ ।
୪ । ଆଧୁନିକ ତତ୍ତ୍ୱ ଅଥବା ଜୈବିକ ବିବର୍ତ୍ତନବାଦ ତତ୍ତ୍ୱ ।

ଉପରୋକ୍ତ ଚାରିଗୋଟି ମତବାଦକୁ ବିସ୍ତରକୁ ନେଲେ ପ୍ରଥମ ଦୁଇଟିର ବିଜ୍ଞାନ ସହିତ କୌଣସି ସମ୍ପର୍କ ନାହିଁ । ସେଗୁଡ଼ିକ ସ୍ୱସ୍ୱପୂର୍ଣ୍ଣ କାଳ୍ପନିକ ସଂଯୋଜନା ମାତ୍ର । ସେଇ ଦୃଷ୍ଟିକୋଣରୁ ଆଲୋଚନା କଲେ ଶେଷ ମତବାଦ ଦୁଇଟିର ଆଧୁନିକ ବିଜ୍ଞାନ ଉପରେ ସମ୍ପୂର୍ଣ୍ଣ ପ୍ରଭାବ ଅଛି । କାରଣ ଏଗୁଡ଼ିକ କେବଳ ବୈଜ୍ଞାନିକ ପରୀକ୍ଷାମୂଳକ ପ୍ରମାଣ ଉପରେ ପର୍ଯ୍ୟବସିତ । ସୁତରାଂ ଦରକାର ବେଳେ ଉକ୍ତ ମତଦ୍ୱୟର ଆଲୋଚନା ଫଳପ୍ରଦ ।

ମତ ପାର୍ଥକ୍ୟ ରହିଥିଲେ ମଧ୍ୟ "ଜୀବାବଶେଷ ହିଁ ମଣିଷ ଜାତି ଇତିହାସର ମୂଳାଧାର ଏଥିରେ କିଛି ଅମତ ହୁଏନା ।" ତଥାପି ଜୀବାବଶେଷର ସନ୍ଧାନେଇ ବୈଜ୍ଞାନିକମାନେ ପରସ୍ପରଠାରୁ ଭିନ୍ନ ମତପୋଷଣ କରନ୍ତି । ଅଧିକାଂଶ ପ୍ରସିଦ୍ଧ ମତରୁ ସାରାଂଶକୁ ଆଲୋଚନା କଲେ "ଜୀବାବଶେଷ ଇତିହାସ ସୃଷ୍ଟିର ବହୁପୂର୍ବରୁ ଆମ ପୃଥିବୀର ମାଟିତଳେ ସମୟର ପ୍ରଭାବରେ ପୋତି ହୋଇ ପଡ଼ିଥିବା ବିଭିନ୍ନ ପ୍ରାଣୀ ଓ ଉଦ୍ଭିଦ ଶରୀରର ଅଂଶ ବିଶେଷକୁ ବୁଝାଇ ଥାଏ । ତନ୍ମଧ୍ୟରୁ ଅନେକ କ୍ରମାଗତ ପୃଥିବୀ ପୃଷ୍ଠରେ ଚାଲି ଆସିଥିବା ପରିବେଶର ପରିବର୍ତ୍ତନ ତଳେ ମାଟି, ପଥର ସ୍ତରରେ ରୂପାନ୍ତରିତ ହୋଇଥାଆନ୍ତି ।" ଅତଏବ ମଣିଷକୁ ଅଭିଶାପ ପ୍ରଭାବରେ ଗଛପତ୍ର, ପଥର, ପଶୁପକ୍ଷୀରେ ପରିଣତ କରିଦେବା ନିତାନ୍ତ ଅମୂଳକ ହୋଇ ନପାରେ । ସେ କାଳରେ କେହି କେହି ନିଜର ସାଧନା ବଳରେ ପରିବେଶକୁ ମଧ୍ୟ କରାୟତ୍ତ କରିପାରୁଥିବେ ଏହା ମିଥ୍ୟା ହେବ କାହିଁକି ? ଯେହେତୁ ଆଜି ଆମ ବିଜ୍ଞାନ ପରିବର୍ତ୍ତନକୁ

ଶକ୍ତିର ରୂପାନ୍ତର ବୋଲି ଗ୍ରହଣ କରି ନେଇଛୁ । ଶକ୍ତିର ଅନେକ ରୂପ ଅଛି ଏବଂ ସମ୍ପୃକ୍ତ ନେଇ ଗୋଟିଏ ରୂପରୁ ଅନ୍ୟ ରୂପକୁ ବଦଳ ଯାଇଥାଏ । ଖୁବ୍ ସହଜରେ ବୁଝିବାପାଇଁ ଗୋଟିଏ ଆଖି ଦେଖା ଉଦାହରଣ ନିଆଯାଇପାରେ ।

ବିଦ୍ୟୁତ୍‌ଶକ୍ତି ଦୁଇଟି ତା'ର ମଧ୍ୟରେ ପ୍ରବାହିତ ହୋଇ ଶବ୍ଦଶକ୍ତି, ଆଲୋକଶକ୍ତି, ଚୁମ୍ବକଶକ୍ତି ଉତ୍ପନ୍ନ କରିବା କଏ ନ ଜାଣେ ! ସୁଇଚଟିଏ ଟିପିଦେଲେ ଦୂରଦର୍ଶନର ରଙ୍ଗୀନ୍ ପରଦାରେ ଚଳଚ୍ଚିତ୍ରର ଗୀତ ବାଜିଉଠେ, ମୁଣ୍ଡ ଉପରେ ବିଦ୍ୟୁତ୍ ପଙ୍ଖା ଘିରିଘିରି ବୁଲି ଆମକୁ ପବନରୁ ଗାଢ଼ ଭରିଦିଏ । ସୁଇଚବୋର୍ଡ କମ୍ପ୍ୟୁଟର ଭଳି ଜଟିଳ କାମକୁ ଖୁବ୍ ସହଜରେ କମ୍ ସମୟରେ କରି ଦେଇଥାଏ । ସବୁ ମଣିଷର ସମାପ୍ତିାନୁକ୍ରମିକ ସାଧନାର ଫଳମାତ୍ର । ତେବେ ଏଇସବୁ ପରିବର୍ତ୍ତନ ଭଳି ଏକଦା ସଜୀବର ଶରୀର ମାଟିତଳେ ପଥର ହୋଇଯିବା ସତରେ କଅଣ ? ଏ ସମ୍ବନ୍ଧରେ ଜୀବବିଜ୍ଞାନୀମାନେ ମତଦିଅନ୍ତି "ଜୀବ ଶରୀରର ଥିବା ଜୈବିକ ପଦାର୍ଥଗୁଡ଼ିକ କ୍ରମାଗତ ଚାପ ତାପର ପ୍ରଭାବରେ ମାଟିରେ ଥିବା ବିଭିନ୍ନ ପ୍ରାକୃତିକ ଧାତବ ପଦାର୍ଥମାନଙ୍କ ଦ୍ୱାରା ବଦଳାଯିବ ହୋଇ ଆଜିର ଜୀବାବଶେଷ ଭାବେ ଦେଖା ଦେଇଛନ୍ତି ।" ଆଜି ପର୍ଯ୍ୟନ୍ତ ମିଳିଥିବା ଅବଶେଷ ଗୁଡ଼ିକୁ ଅନୁଧ୍ୟାନ କରି ଅନେକଗୁଡ଼ିଏ ପର୍ଯ୍ୟାୟଭୁକ୍ତ କରାଯାଇଅଛି । ତନ୍ମଧ୍ୟରୁ ମୁଖ୍ୟ ପର୍ଯ୍ୟାୟ ଗୁଡ଼ିକର ନାମ—

୧ । ଅକ୍ଷତ ଜୀବାବଶେଷ ।

୨ । ରୂପାନ୍ତରିତ ଶିଳାବଶେଷ ।

୩ । ଓ ଅବଶେଷର ଅବଶେଷ ପ୍ରଭୃତି ।

ଉତ୍ତରମେରୁ ନିକଟବର୍ତ୍ତୀ ସାଇବେରିଆର ଚନ୍ଦ୍ରାଞ୍ଚଳର ଅନେକ ଅକ୍ଷତ ଜୀବାବଶେଷ ମିଳିଅଛି । ସେଗୁଡ଼ିକର ସଠିକ ସମୀକ୍ଷା କରିବା ଅସମ୍ଭବ । କାରଣ କାଳକ୍ରମେ ସାମୁଦ୍ରିକ ସ୍ରୋତ, ମାଂସାଶୀ ପ୍ରାଣୀ ଓ ଜନସମାଜ ଦ୍ୱାରା ଅନେକ ନଷ୍ଟପ୍ରାପ୍ତ ଓ ବିଲୁପ୍ତ । ଭୂତ୍ୱାଞ୍ଚଳର ମଣିଷ ଏଥିରେ ଜୀବାବଶେଷକୁ ପ୍ରେତମାନଙ୍କର ଅସ୍ଥି ଓ କଟାଳ ଅମଙ୍ଗଳସୂଚକ ଭାବେ ଗ୍ରହଣ କରିଥାଏ । ସୁତରାଂ ସେ କଳ ଆଖିରେ ପଡ଼ୁଥିବା ଅମୂଲ୍ୟ ସମ୍ପଦକୁ ନଜର ମିଛ କରୁନାହିଁ

ଚକ୍ଷଣ ପାଇଁ ବନାଦ୍ରି ଧାରେ ନଷ୍ଟ କରିବାରେ ପାଏ ଅପାର ଆନନ୍ଦ । ଏହିଭଳି ସ୍ତରରେ ଅସଂଖ୍ୟ ଭବିଷ୍ୟତର ବାର୍ଦ୍ଧକ୍ୟ ପୃଥିବୀରୁ ମଣିଦୋଷ ବିତାଡ଼ିତ । ସମ୍ଭବତଃ ପୃଥିବୀ ପୃଷ୍ଠରୁ ପ୍ରଥମ ଅକ୍ଷତ ଶବାବଶେଷଟି ମିଳିଥିଲା ସୋଭିଏତ୍ ରୁଷର ଲେନାନଦୀ ନିକୋଲେଭସି ଅଞ୍ଚଳରୁ ୧୭୯୯ ଖ୍ରୀଷ୍ଟାବ୍ଦରେ । ସେଇଟି ବର୍ତ୍ତମାନ ଲେନିନ୍‌ଗ୍ରାଡ଼ର ଯାଦୁଘରେ ସୁରକ୍ଷିତ । ତା’ର ପରବର୍ତ୍ତୀ ଅବଶେଷଟି ମିଳିଥିଲା ୧୯୦୧ ଖ୍ରୀଷ୍ଟାବ୍ଦରେ ବେରିଂ ପ୍ରଣାଳୀଠାରୁ ୧୦୦ କିଲୋମିଟର ଦୂର ମେରୁ ସାଗର ଅଞ୍ଚଳରୁ । କେବଳ କେତେକ ମାଂସ ହିଂସ୍ର ପ୍ରାଣୀମାନଙ୍କ ଆହାର ହେବା ବ୍ୟତୀତ ଅବଶେଷଟିର ଅନ୍ୟକିଛି ନଷ୍ଟ ହୋଇ ନ ଥିଲା । କିଭଳି ପରିସ୍ଥିତିର ଫଳରେ ଉକ୍ତ ଅବଶେଷ ରୂପ ନେଇଥିବ ତାହାର ସମ୍ଭାବନା ସମ୍ପର୍କରେ ବୈଜ୍ଞାନିକମାନେ ଅନୁମାନ କରନ୍ତି ଯେ, ନିଜର ଖାଦ୍ୟ ଅନ୍ୱେଷଣରେ ବୁଲୁ ବୁଲୁ ପ୍ରାଣୀଟି ଗଭୀର ବରଫ ଖାଇ ମଧ୍ୟକୁ ଖସି ପଡ଼ି ଥାଇପାରେ । ତତ୍‌ପରେ ବିରାଟ ବିରାଟ ବରଫଖଣ୍ଡ ତଳେ ଚାପିହୋଇ ଆଜଯାଏଁ ଅକ୍ଷତ ଅବସ୍ଥାରେ ରହିବା ଖୁବ୍ ସ୍ୱାଭାବିକ । କାରଣ ଘର ଭିତରେ ନିତ୍ୟ ବ୍ୟବହାର୍ଯ୍ୟ ପରିବାପତ୍ର, ମାଂସ ପ୍ରଭୃତି ସୁରକ୍ଷିତ କରି ରଖିବାପାଇଁ ରେଫ୍ରିଜେଟରର ନିମ୍ନ ତାପମାତ୍ରା ଆମକୁ ସାହାଯ୍ୟ କରିଥାଏ । “ଶହ ଶହ ମିଟର ବରଫ ପାହାଡ଼ର ତାପମାତ୍ରା ଶବାବଶେଷ ପାଇଁ ରେଫ୍ରିଜେରେଟର ( ଶୀତଳୀକରଣ ଯନ୍ତ୍ର )ର କାର୍ଯ୍ୟ କରିଥାଏ । ପ୍ରାଣୀମାନେ ବରଫଖାଇ ମଧ୍ୟକୁ ଗଳିପଡ଼ିବା ଏକ କାଳ୍ପନିକ ପ୍ରମାଣ ନୁହେଁ ସ୍ପଷ୍ଟ ପରୀକ୍ଷା ନିଷ୍ପନ୍ନ ପ୍ରମାଣ । ମିଳିଥିବା ଅବଶେଷଗୁଡ଼ିକୁ ଅନୁଧ୍ୟାନ କରି ଦେଖା ଯାଇଥିଲା ଯେ ସେଗୁଡ଼ିକର ପଛ ଗୋଡ଼ ଗୁଡ଼ିକ ଭଙ୍ଗା ଏବଂ ଛାତି ଭିତରେ କିଛି ଜମାଟବନ୍ଧା ରକ୍ତର ସନ୍ଧାନ ମଧ୍ୟ ମିଳିଥିଲା । ଅନ୍ୟ କେତେକ ଅବଶେଷମାନଙ୍କର ପାଟି ଭିତରୁ ଜାବୁଡ଼ି ଧରିଥିବା ଖାଦ୍ୟର ଅଂଶ ବିଶେଷ ମଧ୍ୟ ମିଳିଥିଲା । ଏଭଳି ଏକ ବିରାଟ ହାତୀର ଅବଶେଷ ଆଲାସ୍କାର ପାର୍ବତ୍ୟାଞ୍ଚଳରୁ ମିଳିଥିଲା, ଯାହାର ପାଟିରେ ଥିଲା କିଛି ଡାଳ ପତ୍ରର ଅଂଶ ବିଶେଷ । ହାତୀର ଅବଶେଷ ଏବେ ଲେନିନ୍-ଗ୍ରାଡ୍‌ର ଯାଦୁଘରେ ସୁରକ୍ଷିତ ।

ମେରୁ ଅଞ୍ଚଳକୁ ବାଦ୍ ଦେଲେ ପୃଥିବୀର ଅନ୍ୟ ଅଞ୍ଚଳରୁ ମିଳିଥିବା ଅକ୍ଷତ ଅବଶେଷ ମଧ୍ୟରେ ପୋଲାଣ୍ଡର ବୋର୍ଦ୍ଦୋଲାନା ଖଣି ଅଞ୍ଚଳରୁ ମିଳିଥିବା ଗଣ୍ଡାର ଅବଶେଷ ପ୍ରଧାନ । ଏହା ୧୯୦୭ ଖ୍ରୀଷ୍ଟାବ୍ଦରେ ମାଟିତଳୁ ପ୍ରାପ୍ତ

୮-୯ ମିଟର ଗଭୀର ରନ୍ଧ୍ର ଖୋଳାଯାଇ ତାହାର କଂଧପାଇଥିଲା। ପୋକଣ୍ଡର ଖଣ୍ଡି ଅଞ୍ଚଳ ତୁନ୍ଦ୍ରାଞ୍ଚଳ ଭଳି ଚିର ବରଫାବୃତ୍ତ ନୁହେଁ। ପ୍ରାକୃତିକ ଶୀତଳୀକରଣ ପ୍ରକ୍ରିୟାର କଳ୍ପନା ଏପରି ସ୍ଥଳେ ଅବାସ୍ତବ। ସୁତରାଂ ସଂଶୟିତ ହେବାକୁ ପଡ଼େ ଯେଉଁ ପ୍ରାକ୍ ଐତିହାସିକ ମୃତଜନ୍ତୁ ତଣ୍ଡୋ ଜବରିର ଶରୀର ମାଟିତଳେ ଅନେକ ପରିବର୍ତ୍ତନର ପ୍ରଭାବରୁ ନିଜକୁ ମୁକ୍ତ ରଖିପାରିଲା କିପରି। କିନ୍ତୁ ଉକ୍ତ ଅଞ୍ଚଳର ଭୂତାତ୍ତ୍ୱିକ ଗଠନ ମାଟିତଳେ ଅମାପ ମହମ ଓ ତେଲ ସ୍ତରର ଥିବାର ପ୍ରମାଣ ଦିଏ। ତେଣୁ ତେଲ ଓ ମହମର ପ୍ରଭାବରେ ଅବଶେଷଟି ପ୍ରତ୍ୟେକ ପ୍ରାକୃତିକ ପରିବର୍ତ୍ତନକୁ ସହଜରେ ଏଡ଼ାଇ ଦେଇ ବ୍ୟକ ଖାସୁଥିବାର ଏହା ଏକ ନିର୍ଭୁଲ ବଳିଷ୍ଠ ପ୍ରମାଣ। ତେଲ ଓ ମହମର ଏଭଳି ସୁରକ୍ଷା ପ୍ରଦାନ ଗୁଣଟି ଅଜଣା ନୁହେଁ। ପୁରାଣ ଯୁଗରେ ମଧ୍ୟ ଏହାର ବହୁଳ ପ୍ରସାର ଥିବାର ଲିଖିତ ପ୍ରମାଣ-ମାନ ଲିପିବଦ୍ଧ।

ରାମାୟଣରେ ବର୍ଣ୍ଣନା କରାଯାଇଅଛି ଯେ, ମହାରାଜ ଦଶରଥ ଏକ ଅନ୍ତଃପୁରରେ ମୃତ୍ୟୁବରଣ କରିଥିଲେ। ସେଇ ସମୟରେ ବଡ଼ପୁଅ ରାମଚନ୍ଦ୍ର, ଭାଇ ଲକ୍ଷ୍ମଣ ଓ ସ୍ତ୍ରୀ ସୀତାଙ୍କୁ ନେଇ ବନବାସ ତଥା ଅନ୍ୟ ଦୁଇପୁଅ ଭରତ ଶତ୍ରୁଘ୍ନ ମାମୁଁ ଘରେ ଥାଆନ୍ତି। ରାଜ କୁଳର ପରମ୍ପରା ଅନୁଯାୟୀ ପୁଅ ରାଜା ହୋଇ ଆଦେଶ ଦେଲେ ବାପର ଶବ ସତ୍କାର କରାଯାଇଥାଏ। କିନ୍ତୁ କୌଣସି ପୁଅ ପାଖରେ ନାହାନ୍ତି। ଭରତ ରାଜଧାନୀକୁ ଫେରିବାପାଇଁ ଅନ୍ୟୁନ ଏକମାସ ସମୟ ଲାଗିଯାଇପାରେ। ତେଣୁ ସେ ଅଯୋଧ୍ୟା ବାହୁଡ଼ି ରାଜା ହେବା ପର୍ଯ୍ୟନ୍ତ ଦଶରଥଙ୍କ ଶବ ରହିଥିଲା ସୁଗନ୍ଧ ତୈଳର ଏକ ବଡ଼ କୁଣ୍ଡ ମଧ୍ୟରେ। ଅତଏବ ସେଇ ତ୍ରେତୟା ଯୁଗର ମଣିଷ ମଧ୍ୟ ଜାଣିଥିଲା ତେଲ ଏକ ସଂରକ୍ଷକ ବୋଲି।

ଏହାକୁ ବାଦ୍ ଦେଲେ ଇତିହାସରୁ ଆମେ ପଢିବାକୁ ପାଉ ପୁରାତନ ମିଶରର ରାଜା ରାଣୀଙ୍କର ମୃତ୍ୟୁପରେ ଶବ ଗୁଡ଼ିକରେ ଏକପ୍ରକାର ତେଲର ଲେପ ଦେଇ ପିରାମିଡ୍ ମଧ୍ୟରେ ରଖାଯାଉଥିଲା। ପ୍ରାଚ୍ୟନ ମିଶରବାସୀଙ୍କର ବିଶ୍ୱାସ ଥିଲା ରାଜା ଓ ରାଣୀ ଈଶ୍ୱରଙ୍କ ସନ୍ତାନ। ଦିନେ ନା ଦିନେ ଈଶ୍ୱର ନିଜେ ପୃଥିବୀକୁ ଓହ୍ଲାଇ ଆସି ସେମାନଙ୍କୁ ପୁନର୍ଜୀବନ ଦେବେ। ଆଜ ବିଜ୍ଞାନ

ଈଶ୍ୱରଙ୍କୁ ମାନେନା । କିନ୍ତୁ ବ୍ୟବହୃତ ତୈଳ ପ୍ରଦୀପକୁ ମାନିବାକୁ ବାଧ୍ୟ । ଦୁଃଖ ଓ ପରିତାପର ବିଷୟ କାଳର ଜଗତରେ ଉକ୍ତ ତୈଳ ବ୍ୟବହାର ଜନ ମଧ୍ୟ ଆମକୁ ଗ୍ରହ ଗ୍ରାସଯାଉଛି । ତାହାର କୌଣସି ଅବଶେଷର ସନ୍ଧାନ ଏ ଯାଏଁ ମିଳୁନାହିଁ ।

ପ୍ରକୃତିର ଗନ୍ତାଘର କେବଳ ଅତିକାୟ ଜୀବମାନଙ୍କ ଅବଶେଷ ସମୃଦ୍ଧ ନୁହେଁ, ତା' ଭିତରେ ସାଇତା ହୋଇଛି ଅସଂଖ୍ୟ କ୍ଷୁଦ୍ର କୀଟ ପତଙ୍ଗର ଅବଶେଷ ମଧ୍ୟ । ଏଗୁଡ଼ିକ ଉପରୋକ୍ତ ଅତିକାୟ ଅବଶେଷ ତୁଳନାରେ କୌଣସି ଗୁଣରେ ନ୍ୟୁନ ନୁହନ୍ତି । ଜର୍ମାନ ଦେଶରେ କୋଳଂସବର୍ଗ ଅଞ୍ଚଳରୁ ମିଳିଥିବା ପତଙ୍ଗମାନଙ୍କର ଜୀବାଶ୍ମକୁ ବିଶ୍ଳେଷଣ କରି ଆଜିର ମଣିଷ ବିସ୍ମୟାଭିଭୂତ ହୋଇ ପଡ଼ୁଛି । ଏଗୁଡ଼ିକ ନିଜେ ନିଜେ ସମୟର ସୁଅକାଟି ସୁରକ୍ଷିତ ଅବସ୍ଥାରେ ଅଛନ୍ତି । ମନେହୁଏ ପତଙ୍ଗଗୁଡ଼ିକ ମଧ୍ୟ ବୈଜ୍ଞାନିକ ଜ୍ଞାନ ସମୃଦ୍ଧ ଥିଲେ । ସେମାନେ ନିଜର ଜୀବାଶ୍ମର ସୁରକ୍ଷାପାଇଁ କବରଟିଏ ତୋଳି ଦେଇ ତା ମଧ୍ୟରେ ଜୀବନ ଉତ୍ସର୍ଗ କରି ଯାଇଥିଲେ ଯେପରି । ଜୀବାଶ୍ମର ସ୍ୱରୂପଟିରେ ଥିବା ସୁରକ୍ଷା ପାଚେଶି ପତଙ୍ଗର ପାଟିରୁ ଝରି ପଡୁଥିବା ଲାଳରୁ ତିଆରି ହୋଇଥିବାର ପ୍ରମାଣ ମିଳି ସାରିଲାଣି । ଲାଳ ସମୟକ୍ରମେ ପରିବେଷ୍ଟନୀର ଚାପ ଓ ତାପମାତ୍ରାର ପ୍ରଭାବରେ ଝୁଣାଭଳି ଅଠାଳିଆ ପଦାର୍ଥରେ ପରିଣତ ହୋଇ ଭିତରର ଜୀବାଶ୍ମକୁ ଅକ୍ଷତ ରହିବାର ସୁରକ୍ଷା ପ୍ରଦାନ କରିଥାଏ । ଏହା କମ ବିସ୍ମୟର କାରଣ ନୁହେଁ । ବିଜ୍ଞାନ ଆଜି ନିଜକୁ ଖୁବ୍ ଉନ୍ନତ ବୋଲି ଧ୍ୱଜା ବାନ୍ଧିବାରେ ବ୍ୟସ୍ତଥିବା ବେଳେ ଏଭଳି ଏକ ରାସାୟନିକ ପଦାର୍ଥର ଉଦ୍ଭାବନ କରିବାକୁ ସମର୍ଥ ହୋଇ ପାରିନାହିଁ । କିନ୍ତୁ ଯୁଗେ ଯୁଗେ ପ୍ରକୃତିର ଗନ୍ତାଘର ବିଚିତ୍ର ବସ୍ତୁରେ ପରିପୂର୍ଣ୍ଣ । "ଆମେ ପ୍ରକୃତିକୁ ନଷ୍ଟ କରିବାକୁ ଯାଇ ନିଜର ଧ୍ୱଂସକୁ ଡାକି ଆଣିବାରେ ପ୍ରତ୍ୟେକଟି ମୁହୂର୍ତ୍ତ କଟାଉଛେ" ଉକ୍ତି ଅକାଟ୍ୟ ବୋଲି ପ୍ରମାଣିତ ।

ଏତଦ୍‌ବ୍ୟତୀତ ଅନେକ ସମୟରେ ପୃଥିବୀର ମାଟିତଳୁ ବିଭିନ୍ନ ଜାତିର ଜୀବମାନଙ୍କର କଙ୍କାଳ ଖଣ୍ଡ, ହାଡ଼, ଦାନ୍ତ, ଖପୁରି ପ୍ରଭୃତି ଖୁବ୍ ଟାଣ ପଥର ଭଳି ଅବସ୍ଥାରେ ମିଳିଥାଏ । ସେଗୁଡ଼ିକୁ ଆମେ ରୂପାନ୍ତରୀ ଓ ଶିଳାଃଶେଷ

ନାମରେ କହୁଥାଉ । ଯୁଗଯୁଗ ଧରି ମାଟିତଳେ ପୋତି ହୋଇ ରହିଯିବା ଫଳରେ ରସାୟନିକ ପ୍ରକ୍ରିୟାର ପ୍ରଭାବରେ ଜୀବ ଶରୀରର ଅନେକାଂଶ ମାଟି ତଳର ଧାତୁ ଯଥା :-ଲୁହା, ମ୍ୟାଗନେସିୟମ ପ୍ରଭୃତି ଦ୍ୱାରା ସ୍ଥାପିତ ହୋଇ-ଥାଏ । ଆମକୁ ମିଳୁଥିବା ଶାମୁକା ଖୁବ୍ ସହଜରେ କାଳରେ ରୂପାନ୍ତରିତ ହେଉଥିବାର ପ୍ରମାଣ ଅତି ସୁଲଭ୍ୟ । ଖଣିମାନଙ୍କୁ ମିଳୁଥିବା ଶକ୍ତିର ଉତ୍ସ କୋଇଲା ପୁରାତନ କାଳର ବିରାଟ ବିରାଟ ପ୍ରାଣୀ ଓ ବୃକ୍ଷ ଖଣ୍ଡିର ଅବଶେଷ ମାତ୍ର । ଅନେକ ଦିନଧରି ମାଟିତଳେ ପୋତି ହୋଇ ରହିଯିବା ପରେ କ୍ରମଶଃ ଉକ୍ତ ସ୍ଥାନର ଚତୁଃପାର୍ଶ୍ୱର ମାଟି କଠିନ ହୋଇ ଯାଇଥାଏ । ବର୍ଷାଜଳ ପୃଥିବୀ ପୃଷ୍ଠରୁ ଧୀରେ ଧୀରେ ମାଟିର ଛିଦ୍ର ମଧ୍ୟ ଦେଇ ଅଭ୍ୟନ୍ତରରେ ପ୍ରବେଶ କରି ମୃତ ଶରୀରର ଜୈବିକ ପଦାର୍ଥଗୁଡ଼ିକୁ ଜଳୀୟ ପଦାର୍ଥରେ ପରିଣତ କରିବାରେ ସାହାଯ୍ୟ କରେ । କ୍ରମାଗତ ଏହି ପ୍ରକାର ରସାୟନିକ ପ୍ରକ୍ରିୟାର ପ୍ରଭାବରେ ଅନେକ ଅବଶେଷ ନିଜର ଆକୃତି ସମ୍ପୂର୍ଣ୍ଣ ରୂପେ ହରାଇ ବସନ୍ତି । ଏପରିକି ସେଗୁଡ଼ିକର ଗନ୍ଧ, ବର୍ଣ୍ଣ, ଗଠନ ପ୍ରଭୃତି ପୂରାପୂରି ଲୋପପାଇ କେତେକ ନୂତନ ପଥରଖଣ୍ଡ ମାତ୍ର ମିଳିଥାଏ । ଅନେକ କ୍ଷେତ୍ରରେ ଅବଶେଷର ଖଣ୍ଡିତାଂଶ ଗୁଡ଼ିକୁ ତରଳ ପ୍ଲାଷ୍ଟର ଅଫ୍ ପ୍ୟାରିସର ଏକ ପ୍ରଲେପ ସାହା-ଯ୍ୟରେ ସଂଗ୍ରହ କରିପାଇ ନମୁନା ପ୍ରସ୍ତୁତ କରାଯାଇଥାଏ । ଏପ୍ରକାର ଅବଶେଷ ଗୁଡ଼ିକ ଧ୍ୱଂସସ୍ତୂପ ମଧ୍ୟରୁ ଅନେକ ଗଭୀରତାରୁ ମିଳିଥାଏ । ଉଦାହରଣ ସ୍ୱରୂପ ୭୯ ଖ୍ରୀଷ୍ଟାବ୍ଦରେ ଭୟାବହ ଭିସୁଭିୟସ୍ ଆଗ୍ନେୟଗିରିର ଉଦ୍‌ଗିରଣ ଦ୍ୱାରା ପମ୍ପେଇ ସହରକୁ "ଜୀବାଶ୍ମ ନଗର"ରେ ପରିଣତ କରି ଦେଇଥିଲା । ପର-ବର୍ତ୍ତୀ କାଳରେ ପ୍ରାୟ ୨୦୦୦ ସଂଖ୍ୟକ ମଣିଷ, ଗୃହପାଳିତ ପଶୁମାନଙ୍କର ଶରୀରାବଶେଷ ମାଟି ଖୋଳି ବାହାର କରାଯାଇଥିଲା । ଉକ୍ତ ଜୀବାଶ୍ମମାନଙ୍କର ଅବସ୍ଥାରୁ ଉଦ୍‌ଗିରଣର ଭୟାବହତା ସହଜରେ କଳ୍ପନା କରାଯାଇ ପାରିଥିଲା । ମିଳିଥିବା ନମୁନା ଅବଶେଷ ନିଜର ଆକୃତି ହରାଇ ଥିଲେ ମଧ୍ୟ ପ୍ରକୃତି ହରାଇ ନ ଥିଲେ । ସେଗୁଡ଼ିକର ବୈଜ୍ଞାନିକ ପରୀକ୍ଷାରୁ ସେ ସମୟର ଖାଦ୍ୟ, ବସ୍ତ୍ର, ବାସଗୃହ ସମ୍ବନ୍ଧରେ ସମ୍ୟକ୍ ବିବରଣୀ ଉପରେ ଆଲୋକପାତ କରାଯାଇ ପାରିଥିଲା ।

ଅବଶେଷର ଅନୁପସ୍ଥିତିରେ ମଧ୍ୟ କେତେକ ପ୍ରାଣୀ ନିଜ ନିଜର ପାଦ-ଚିହ୍ନ, ଘୋଷଡ଼ାଦାଗ ପ୍ରଭୃତିରୁ ଜଣାପଡ଼ି ଥାଆନ୍ତି । ଅଭଙ୍ଗ ଶିକାର ପ୍ରାୟ

ଐତିହାସିକ ଯୁଗରୁ ଏଇସବୁ ଚିହ୍ନକୁ ଠିକ ଭାବରେ ଚିହ୍ନିପାରି ଜନ୍ତୁମାନଙ୍କର ଆକାର, ବ୍ୟବହାର, ଆଚରଣ ପ୍ରକୃତି ଠାବ କରିହୋଇଅଛି, ଆମମାନଙ୍କ ମଧ୍ୟରୁ ପ୍ରାପ୍ତ ଅନେକ ସାପର ଖୋଳପା ଚିହ୍ନରୁ ତାହାର ଲମ୍ବା କେତେ ଅନୁମାନ କରିପାରନ୍ତି, ଅଜ୍ଞାତ ଜଙ୍ଗଲରେ ବାଘ, ହାତୀ, ସିଂହମାନଙ୍କ ପାଦଚିହ୍ନ ବାରି ଶିକାର କରାଯାଇଥାଏ, ହିମାଳୟର ବରଫ ଶୃଙ୍ଗର ନିକଟବର୍ତ୍ତୀ ଅଞ୍ଚଳରୁ ମିଳି-ଥିବା ବଡ଼ ବଡ଼ ପାଦଚିହ୍ନକୁ ପୁରାଣଯୁଗର ଅସୁରମାନଙ୍କର ବୋଲି ଏବେ ବି ଆମର ଧାରଣା ରହିଆସିଅଛି ।

ଦିନକୁ ଦିନ ହୋଇ କୋ'ଟି କୋଟି ଦିନ କାହିଁ କୁଆଡ଼େ ଲୁଚିଗଲଣି । ଲୁଚିଗଲେଣି ସେଇ ପୁରୁଣା ଦିନର ଚରିଟକାପ୍ତ ଜୀବଜନ୍ତୁ, କିନ୍ତୁ ସେମାନେ ମରି ମଧ୍ୟ ଆମ ପାଖରେ ଅମର । ନିଜକୁ ପ୍ରକୃତ ଭୋଳରେ ହଜାଇ ଯାଇଛନ୍ତି ଆଜିର ସଭ୍ୟ ମାନବ ସମାଜର ଜ୍ଞାନ ବୃଦ୍ଧି ପାଇଁ । ଆମେ କିନ୍ତୁ କରୁ କ'ଣ ? ପର ପାଟିରେ ମିଠା ଖୁଆଇ ବାହାବା କରୁ । ପୃଥିବୀ ପୃଷ୍ଠରେ ଲୁଚି ରହିଥିବା କଙ୍କାଳର ସନ୍ଧାନ ମିଳିଲେ ତାକୁ ନେଇ ଅଜଣା ଅତୀତକୁ ଜାଣିବାରେ ଲାଗିଯାଉ । ସେଇ କଙ୍କାଳ ପାଉଁଣ, ପଥରଖଣ୍ଡ ପାନ୍ତି ଖୋଳି ଅନେକ ତଥ୍ୟ ଉପସ୍ଥାପନ କରିଥାଅନ୍ତି । ପ୍ରକୃତରେ ଆମେ ପାଉ କଅଣ ?

ଭିନ୍ନ ଭିନ୍ନ ସାମୁଦ୍ରିକ ଜୀବାଣୁ ଗୁଡ଼ିକର ପର୍ଯ୍ୟାଲୋଚନାରୁ ସେ ସମୟର ସାଗର, ମହାସାଗର ଓ ପୃଥିବୀର ଜଳଭାଗର ବିସ୍ତାର ସମ୍ପର୍କରେ ସମ୍ୟକଭାବେ ଜ୍ଞାନଲାଭ ହୁଏ । ସ୍ଥଳଭାଗର ଜୀବାଣୁଗୁଡ଼ିକ ସୂଚାଇ ଦିଅନ୍ତି ସେହିଦିନର ପୃଥିବୀରେ ସ୍ଥଳଭାଗର ଆୟତନ କେତେଥିଲା ବୋଲି । ଭିନ୍ନଯୁଗର ଜୀବାଣୁର ସଠିକ ପର୍ଯ୍ୟାଲୋଚନାରୁ ସ୍ଥଳଭାଗ ଓ ଜଳଭାଗର ଆୟତନ ସମ୍ବନ୍ଧରେ ଏକ ଧାରାବାହିକ ବିବରଣୀ ମିଳିଥାଏ । କେବଳ ଜୀବାଣୁର ପର୍ଯ୍ୟାଲୋଚନାରୁ ଲବ୍ଧ ଜ୍ଞାନରୁ ପ୍ରଫେସର ସକ୍ୟୁବର୍ଟ ଉତ୍ତର ଆମେରିକାର ତତ୍କାଳୀନ ମାନଚିତ୍ର ପ୍ରସ୍ତୁତ କରିବାକୁ ସକ୍ଷମ ହୋଇ ପାରିଥିଲେ ।

ଅନେକ ଜୀବାଣୁର ମିଳୁଥିବା ରସାୟନିକ ପଦାର୍ଥରୁ ତତ୍କାଳୀନ ପୃଥିବୀ ପୃଷ୍ଠ ବାୟୁମଣ୍ଡଳର ଉତ୍ତାପ ଓ ଆର୍ଦ୍ରତା ଠିକଭାବେ ନିରୂପଣ କରାଯାଇଥାଏ ।

ଏସବୁକୁ ବାଦଦେଲେ ଆଧୁନିକ ଧାତବ ବୈଜ୍ଞାନିକମାନେ ଜୀବାଶ୍ମରେ ଥିବା ତେଜସ୍କ୍ରିୟତାରୁ ତାହାର ଜନ୍ମ ସମୟ ନିର୍ଣ୍ଣୟ କରି ପାରିବାରେ ସମର୍ଥ ହୋଇଛନ୍ତି । କୋଇଲାରେ ଥିବା ତେଜସ୍କ୍ରିୟ ଅଙ୍ଗାରକରୁ ମୃତ ଗଛର ବୟସ ଜାଣିବା ଖୁବ୍ ସହଜ । ଅନେକ କ୍ଷେତ୍ରରେ ବୈଜ୍ଞାନିକ ଆଜି ପାଦଟିଏ ଆଗେଇ ଯାଇ ଜୀବାଶ୍ମରୁ ପୃଥିବୀ ଅଭ୍ୟନ୍ତରରେ ଥିବା ଅମୂଲ୍ୟ ସମ୍ପଦର ସନ୍ଧାନ କରିପାରୁଛନ୍ତି । ମୋଟାମୋଟି ଭାବରେ କହିବାକୁ ହେଲେ ଜୀବାଶ୍ମ ଆମକୁ ଦିଏ "ଜ୍ଞାନ, ବିଜ୍ଞାନ ଓ ଧନର ଅମାପ ଭଣ୍ଡାର ପ୍ରକୃତିର ଗୋପ୍ୟଘର ଖୋଜ ।" ସୃଷ୍ଟିର ଧରି ଜୀବ ଜୀବନ ପ୍ରକୃତି ପରିବର୍ତ୍ତନର ରୂପରେଖ ମାତ୍ର । ପରିବେଶ ସହିତ ଖାପ ଖୁଆଇ ଚଳିବା ପାଇଁ ଜୀବ ସମାଜ ନିଜର ଶାରୀରିକ ଗଠନ, ଆଚାର ବ୍ୟବହାରକୁ ଅନୁରୂପ ଭାବେ ଗଢ଼ି ନେଇଥାଏ । କେତେକ ଜୀବଜନ୍ତୁ ନିଜ ଅଞ୍ଚଳରେ ଘଟୁଥିବା ପାଗ ଓ ପ୍ରାକୃତିକ ବିପର୍ଯ୍ୟୟ ସମ୍ବନ୍ଧରେ ଆଗାମୀ ସୂଚନା ଦେଇପାରନ୍ତି । ଯେପରି ଓଟ ମରୁଭୂମିର ବାଲିସ୍ତୂପରେ ଯାତାୟାତ କରୁଥିବାରୁ ତାହାର ଗୋଡ଼ ଖୁରାଗୁଡ଼ିକ ଚଟକା ଓ ଏକପାଳିଆ ; ତାହାର ଜଳଧାରଣ ଶକ୍ତି ଅତି ପ୍ରବଳ । ଏକାଧିକ୍ରମେ ବିନା ଜଳରେ ୧୫/୨୦ ଦିନ ଯାଏଁ ସୁସ୍ଥ ସବଳ ହୋଇ ରହିପାରେ । ମରୁଭୂମିରେ ଉଠୁଥିବା ଅକାଳ ଧୂଳି ଝଡ଼ର ଆଗାମୀ ସୂଚନା ନିଜ ମାଲିକକୁ ଜଣାଇ ଦେଇ ସୁନିଶ୍ଚିତ ମୃତ୍ୟୁ କବଳରୁ ରକ୍ଷା କରିଥାଏ । ଏବେବି ମୟୂର ବର୍ଷାର ସୂଚନା ପାଇ ନୃତ୍ୟରତ ହେଉଛି । ବାଘର ଚେହେରା ମୃଗପଲ ଆତ୍ମରକ୍ଷା ପାଇଁ ପଳାଇ ଯାଇପାରୁଛି । ସୁତରାଂ ପ୍ରକୃତି ସହ ଆମ ଜୀବନ ଅଙ୍ଗାଙ୍ଗୀ ଜଡ଼ିତ ।

ପ୍ରକୃତି କୃପଣ ନୁହେଁ । ସବୁକିଛି ଆମ ପାଇଁ ନିରପଦରେ ପେଡ଼ି ସାଇତା ହୋଇ ରହିଛି । ଅଭାବ ମାତ୍ର ଉପଯୁକ୍ତ ଯତ୍ନର । ଯତ୍ନକଲେ ବାସ୍ତବରେ ଅମୂଲ୍ୟ ରତ୍ନ ମିଳିବ । ଯାହା ଲୋକର ପ୍ରଭାବରେ ଆମର ଜ୍ଞାନ ବିଜ୍ଞାନ ଆଗେଇ ଯିବ ଅନେକ ଦୂରକୁ ଦିଗନ୍ତର ବେଲୁଇଁ ହୋଇ କେଉଁ ଏକ ନୂତନ ପୃଥିବୀ କୋଳକୁ ।



# କିଏ ପର..........କିଏ ଆପଣାର

ସମୟର ସ୍ରୁଅରେ ଭାସି ଭାସି ମଣିଷ ସମାଜ ଆଜ ସୁସ୍ଥ, ସବଳ, ସ୍ୱାବଲମ୍ବୀ ଯୁବକରେ ପରିଣତ ହେଲାଣି । ତା'ର ସବୁଜ ଚଗଲ ଭଳ ସର୍ବଦା ଚଳଚଞ୍ଚଳ ରହିବାର ପ୍ରଚେଷ୍ଟା । ଯୁବକଭିର ପୂର୍ଣ୍ଣଚ୍ଛେଦ ଟାଣିବା କଳ୍ପନାର ବାହାରେ । କିନ୍ତୁ, ସଭ୍ୟତାର ଅଙ୍କୁର ଦନନ୍ତୁ ଗୋଟିଏ ଅବୁଝା, ଅପାସୁଗ ଓ ଅଣଲେଉଟା ପ୍ରଶ୍ନ ରହିଆସିଛି "ମଞ୍ଜିରୁ ଗଛ ନା ଗଛରୁ ମଞ୍ଜି" । ଉଭୟ ମତର ସତ୍ୟତା ପ୍ରବଳ । ଉତ୍ତର ଅନୁତ୍ତରର ଦ୍ୱିଛକ ଉପରେ ଠିଆ ହୋଇଛି ମଣିଷ ସମାଜ ।

ଆହୁରି ମଧ କହିବାକୁ ଲାଜଲାଗେ । ମଣିଷ ନିଜର ଗାଡ଼ି ଚଢ଼ି ଚନ୍ଦ୍ରର ସଡ଼କରେ ବୁଲି ଆସିଲାଣି । ତଥାପି ଆଜ ବି ନିତ ସଞ୍ଜ ହେଲେ ମାଆ କୋଳର ଅଝଟିଆ ଛୁଆ "ଆ ଜହ୍ନ ମାମୁଁ ଶରଦ ଶଶୀ"ର ମଧୁର ସ୍ୱରରେ ଭୁଲିଯାଏ । ପୂର୍ଣ୍ଣିମୀର ଜହ୍ନି ଆଲୁଅରେ ଦେବଏ ବୁଲି ଆସିଲେ ଦରିଦ୍ର ମନ ସରସ ହୋଇଯାଏ । ତେବେ, ଚନ୍ଦ୍ର ସୂର୍ଯ୍ୟଙ୍କର ପୃଥିବୀ ସହିତ ନିଶ୍ଚିତ ଭାବେ ଅନ୍ତରଙ୍ଗ ସମ୍ପର୍କ ରହି ଆସିଅଛି । ଟିକିଏ ଉଚ୍ଚ ଧରଣର ଆଲୋଚନାକୁ ଗଲେ ଆମେ ଦେଖୁ ଯେ, ପୃଥିବୀ ପୃଷ୍ଠରୁ ଜଳବାୟୁ, ଋତୁ, ପାଣିପାଗ ସୂର୍ଯ୍ୟ ଚନ୍ଦ୍ରଙ୍କର ଦାନ । ବିନା ସୂର୍ଯ୍ୟରେ ମେଘ ଅସମ୍ଭବ ଓ ବିନା ଜଳରେ ଜୀବନ କଳ୍ପନା କରିବା ପାଗଳର ପ୍ରଳାପ ମାତ୍ର । ଚନ୍ଦ୍ର ଏବେ ବି ନଦୀ, ହ୍ରଦ, ସମୁଦ୍ରର ଜଳକୁ ଜୁଆରରେ ପରିଣତ କରନ୍ତି । ସତେଯେପରି ବଡ଼ଭାଇ ବୁଝ ଛୁଆକୁ ହାତ ଧରି କୋଳେଇ ନେବାରେ ବ୍ୟସ୍ତ । ସୂର୍ଯ୍ୟ, ଚନ୍ଦ୍ର ଓ ପୃଥିବୀ ଯେ ଗୋଟିଏ ପରିବାରର ମଣିଷ ଭଳି ପ୍ରେମ ଶ୍ରଦ୍ଧାରେ ବାନ୍ଧିହୋଇ ରହିଛନ୍ତି ଏଥିରେ ଅତ୍ୟୁକ୍ତି କିଛି ନାହିଁ ।

ଏତେଗୁଡ଼ିକ ଆଲୋଚନା ପରେ ସ୍ୱତଃ ମନରେ ପ୍ରଶ୍ନଉଠେ "ଏମାନଙ୍କର ଜନ୍ମ ହେଲା କେବେ ଓ କିପରି" । ଅବଶ୍ୟ ଏହାର କୌଣସି ପ୍ରତ୍ୟକ୍ଷ ଗୃହୀତ ପ୍ରମାଣ ନାହିଁ । ସମସ୍ତ ପ୍ରମାଣ କଳ୍ପନା ପ୍ରସୂତ ପୁରାଣ ଯାହା କହେ ବିଜ୍ଞାନ

ଛାକୁ ମାନେନା । ତଥାପି ଆମେ "ନ ଦେଖିଲେ ଓଜ ଢ଼ ଫେଡ଼ା" ଙ୍କରେ କହୁ ପୌରାଣିକ ଓ କହୁ ବୈଜ୍ଞାନିକ ପ୍ରମାଣକୁ ଅଧିକ ବିଶ୍ୱସନୀୟ ବୋଲି ଗ୍ରହଣ କରିଥାଉ । ଆମକୁ ସାହାଯ୍ୟ କରିବାକୁ ଆସିଥିବା ପ୍ରତ୍ୟେକ ପ୍ରମାଣ ନିର୍ଜୀବ ବସ୍ତୁ ମାତ୍ର ।

ପୃଥିବୀର ବିଭିନ୍ନ ଭାଗରୁ ମିଳୁଥିବା ଜୀବାଶ୍ମ ( fossil ) ର ଗଠନ ଓ ପ୍ରକୃତିକୁ ଅନୁଧ୍ୟାନ କଲେ ଜଣାପଡ଼େ ପ୍ରଥମ ପ୍ରାଣୀ ପ୍ରାୟ ୫୦ କୋଟି ବର୍ଷ ପୂର୍ବେ ଆସିଥିଲା । ସୁତରାଂ ପୃଥିବୀର ବୟସ ନିଶ୍ଚିତ ଭାବେ ୫୦ କୋଟି ବର୍ଷର ଢ଼େର ବେଶୀ । ଆଜି ଯୁଗରେ ଲୁପ୍ତ ପ୍ରାୟ ଅନେକ ଉଦ୍ଭିଦମାନଙ୍କ ଅବଶେଷ ମଧ୍ୟ ଉପରୋକ୍ତ ବୟସକୁ ସମର୍ଥନ କରେ । ଜୀବାଶ୍ମ ତାହାର ହେଲେ ମଧ୍ୟ ଅତୀତର ସୁଦୂର ସୂଚନା ଦେଉଥିବା ସେ ଅନେକ ଖଣ୍ଡଖଣ୍ଡା ମଧ୍ୟ ଦେଇ ଏତେବାଟ ଆସିଛି ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । "ରୋମଭଳି ନଗରୀଟିଏ ଗଢ଼ିବାରେ ଯଦି ଶତାବ୍ଦୀ ଶତାବ୍ଦୀ ବିତି ଯାଇପାରେ", ତେବେ ଏତେବଡ଼ ପୃଥିବୀ ଗଠନ ସହଜରେ ଅନୁମେୟ ।

ବୟସର ସୀମା ନିର୍ଦ୍ଧାରଣ ଯେନତେନ ପ୍ରକାରେଣ କରିସାରିବା ପରେ ମଣିଷ ସମାଜ ଆଗରେ ଠିଆ ହୁଏ ଆଉ ଏକ ଦୁର୍ଭେଦ୍ୟ ପାଚେରୀ । ପୃଥିବୀର ଜନ୍ମଦାତା କିଏ ? କିଏ ପିତା ମାତା...? ଏ କ୍ଷେତ୍ରରେ ଆମେ ପୁରାଣକୁ ସମ୍ପୂର୍ଣ୍ଣଭାବେ ବାଦ୍‌ଦେଇ ବୈଜ୍ଞାନିକ ପ୍ରମାଣକୁ ବାଛି ନେଇଛୁ । କେତେକ ବୈଜ୍ଞାନିକ ସୂର୍ଯ୍ୟକୁ ହିଁ ପୃଥିବୀର ଜନ୍ମପିଣ୍ଡ ଭାବେ ଗ୍ରହଣ କରୁଥିବା ବେଳେ ଅନ୍ୟ କେତେକ ବୈଜ୍ଞାନିକ ସୂର୍ଯ୍ୟ, ଚନ୍ଦ୍ର ଓ ପୃଥିବୀ ସମସ୍ତଙ୍କର ଉତ୍ପତ୍ତିସ୍ଥଳ ଏକ ଓ ଅଭିନ୍ନ ବୋଲି ପ୍ରମାଣ ଦେଇ ଆସୁଛନ୍ତି ।

ସୂର୍ଯ୍ୟ ହିଁ ପୃଥିବୀର ମୂଳାଧାର ଏହି ମତବାଦକୁ "ଜୁଆର ମତବାଦ" ବା "ଚୁମ୍ବକୀୟ ମତବାଦ" ଓ ଅନ୍ୟ ମତବାଦକୁ "ନୀହାରିକା ମତବାଦ" ରୂପେ ଅଭିହିତ କରାଯାଇଥାଏ ।

## ଚୁମ୍ବକୀୟ ମତବାଦ

ଏ ପ୍ରକାର ମତବାଦର ସ୍ରଷ୍ଟା ବୈଜ୍ଞାନିକ ଡାରହେଲ୍ । ସେ କୁହନ୍ତି "କୋଟି କୋଟି ବର୍ଷତଳେ ଆଜିର ଆକାଶରେ ଶୋଭା ପାଉଥିବା ସୂର୍ଯ୍ୟ, ଚନ୍ଦ୍ର, ତାରକାମାନେ କିଛି ନ ଥିଲେ । ଆଜିର ପୃଥିବୀ ମଧ୍ୟ ନ ଥିଲା । କେତେକ ଜ୍ୱଳନ୍ତ ଅଗ୍ନିପିଣ୍ଡ ଅନନ୍ତ ଆକାଶ ବକ୍ଷରେ ସ୍ୱଚ୍ଛନ୍ଦରେ ଘୂରି ବୁଲୁଥିଲେ । ସମସ୍ତ ଜ୍ୱଳନ୍ତ ପିଣ୍ଡଗୁଡ଼ିକ ଦହନଶୀଳ ପଦାର୍ଥଦ୍ୱାରା ସୃଷ୍ଟି ହୋଇଥିଲେ । ଏହାପରେ ଘୂରିବୁଲିବା ବେଳେ କୋଟିଏ ପ୍ରକାଣ୍ଡକାୟ ଜ୍ୱଳନ୍ତ ପିଣ୍ଡରେ ସହସା ରସାୟନିକ ଗଠନର ପରିବର୍ତ୍ତନ ସଙ୍ଘଟିତ ହୋଇ ଉଠିଥିଲା । ଏ ସବୁର କାରଣ ସ୍ୱରୂପ ପାରିପାର୍ଶ୍ୱିକ ଚାପ ଓ ତାପକ୍ରମର ପରିବର୍ତ୍ତନକୁ ଦର୍ଶାଇ ଦିଆ-ଯାଇଅଛି । ରସାୟନିକ ପ୍ରକ୍ରିୟାଦ୍ୱାରା ଜ୍ୱଳନ୍ତ ପିଣ୍ଡଟି ଖୁବ୍ ଜୋର୍‌ରେ ଆନ୍ଦୋଳିତ ହୋଇ ତନ୍ମଧ୍ୟରେ ଚୁମ୍ବକୀୟ ଝଡ଼ର ସୂତ୍ରପାତ ହେଲା । ଫଳତଃ, ପ୍ରକାଣ୍ଡ ଜ୍ୱଳନ୍ତ ପିଣ୍ଡଟି କ୍ରମେ କ୍ରମେ ଖଣ୍ଡ ଖଣ୍ଡ ହୋଇ ଭାଙ୍ଗି ପଡ଼ିବାକୁ ଲାଗିଲା । ସୃଷ୍ଟି ହୋଇଥିବା ସମକାୟୀୟ ଜ୍ୱଳନ୍ତ ପିଣ୍ଡ ମଧ୍ୟରୁ ବୃହତ୍ତମ ପିଣ୍ଡଟିର ନାମ ସୂର୍ଯ୍ୟ ବୋଲି ଦିଆଯାଇଥିଲା । ସୂର୍ଯ୍ୟ ମୂଳପିଣ୍ଡରୁ ବିଚ୍ଛିନ୍ନ ହୋଇ ଆସିବା ପରେ ମଧ୍ୟ ଚୁମ୍ବକୀୟ ଝଡ଼ର କାଳ ବୈଶାଖୀ କବଳରୁ ମୁକ୍ତ ହୋଇପାରି ନ ଥିଲା । କିଛିକାଳ ମଧ୍ୟରେ ସୂର୍ଯ୍ୟ ମଧ୍ୟ ଅନେକ ଖଣ୍ଡିତାଂଶରେ ପରିଣତ ହୋଇ ଆଜିର ସୌରଜଗତର ସୃଷ୍ଟି କରିବାରେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲା । ଆଜିର ସୂର୍ଯ୍ୟ ବିଗତ ଦିନ ସୂର୍ଯ୍ୟର ଅଂଶବିଶେଷ । ଏହା ଅନ୍ୟାନ୍ୟ ପିଣ୍ଡମାନଙ୍କଠାରୁ ଯଥେଷ୍ଟ ବଡ଼ ଓ ବଳବାନ ବୋଲି ସେଗୁଡ଼ିକ ସୂର୍ଯ୍ୟଙ୍କୁ ପ୍ରଦକ୍ଷିଣ କରନ୍ତି । ପ୍ରତ୍ୟେକ ଗ୍ରହକୁଳର ଏକ ବିଶିଷ୍ଟ ନିୟମ ସେ ସୂତ୍ରରେ ମଧ୍ୟ ଥିଲା । ସେହି ଦିନଠାରୁ ଆଜି ଭିତରେ ଅନେକଥର ନିର୍ଦ୍ଦିଷ୍ଟ ସମୟ ବ୍ୟବଧାନରେ ସୂର୍ଯ୍ୟର ନାଭିକେନ୍ଦ୍ରରେ ଚୁମ୍ବକୀୟ ଝଡ଼ର ଜୁଆର ଉଠି ଆସୁଅଛି ଯାହାକି ଆମକୁ ଦେଉଛି ସୌର କଳଙ୍କର ସୂଚନା । ସେଇ ପୃଥିବୀ ଆଜି ଭଳି ମନଲୋଭା ଓ ଜୀବନ୍ତ ମାଆଟିଏ ନଥିଲା । ଥିଲା ମାତ୍ର ଏକ ଜିହ୍ୱା ଲହ ଲହ କରୁଥିବା ନିଆଁର ଭଣ୍ଡାର । ସମୟକ୍ରମେ ଏହା ଗ୍ୟାସୀୟ, ତରଳ ଅବସ୍ଥା ଅତିକ୍ରମ କରି କଠିନ ଅବସ୍ଥାକୁ ଆସିଛି । ଏବେ ବି ପରି-ବର୍ତ୍ତନର ଡାଙ୍ଗା ପୃଥିବୀ ବକ୍ଷରେ ସୁସ୍ପଷ୍ଟ । ଭୂମିକମ୍ପ, ଆଗ୍ନେୟଗିରିର ଉଦ୍‌ଗିରଣ, ମାଟିତଳୁ ଉଠି ଆସୁଥିବା ଜାଳେଣୀ ଗ୍ୟାସ୍ ଓ ତୈଳ ସମ୍ପଦ

ସୂର୍ଯ୍ୟବତ ଏ ଅଗୋଚର ହମ ବର୍ତ୍ତନର ଧାରାକୁ । ଅନନ୍ତର ମୂକ ବଧିର ବନ୍ଧ୍ୟା ପୃଥିବୀର କବର ଭଳି ଆଜ ଉଠିଆସିଛି ନିତ୍ୟ ନୂତନ ସ୍ପନ୍ଦମାନ୍ଧଣୀ ପୃଥିବୀ ମାଆଟିଏ ଆମପାଇଁ ।

ପୃଥିବୀ ପରି ଆଉରି ଆଠଗୋଟି ପୃଥିବୀ ଆକାଶରେ ଅମର ଜଣାଶୁଣା । ଏଇମାନଙ୍କୁ ଆମେ ନବଗ୍ରହ ବୋଲି କହୁଥାଉ । କଏ କହିବ, ଆଉ କେତେ ନବଗ୍ରହ ଓ ଆଉ କେତେ ସୂର୍ଯ୍ୟ ଅନ୍ୟ ଆକାଶରେ ନ ଥିବେ ବୋଲି । ଗ୍ରହମାନଙ୍କଠାରୁ ଆକାରରେ ଢେର ସାନ ଓ ସେମାନଙ୍କ କକ୍ଷ୍ୟାରେ ରହିଥିବା ଅନ୍ୟସବୁ ସମଜାତୀୟ ପିଣ୍ଡବୃନ୍ଦଙ୍କୁ ଉପଗ୍ରହ, ଗ୍ରହାଣୁପୁଞ୍ଜ ଇତ୍ୟାଦି ନାମ ଦିଆ-ଯାଇଥାଏ । ଚନ୍ଦ୍ର ପୃଥିବୀର ଉପଗ୍ରହ ହୋଇ ସେଇ କାଳରୁ ବୁଲି ଆସୁଅଛି । ସେଇ ଯୋଗୁ ସେ ସମସ୍ତଙ୍କର ଅଦରର "ଜହ୍ନମାମୁଁ" ।

## ନୀହାରିକା ମତବାଦ

ବିଶ୍ୱ ମତବାଦର ପ୍ରତିଷ୍ଠାତା ପ୍ରଖ୍ୟାତ ବୈଜ୍ଞାନିକ ଲାପ୍‌ଲେସ୍ । ତାଙ୍କ ମତରେ "ଅନନ୍ତ କୋଟି ବର୍ଷତଳେ ଆଜ ଭଳି ସୂର୍ଯ୍ୟ, ଚନ୍ଦ୍ର, ତାରା କେହି ନ ଥିଲେ । ଆକାଶ ଥିଲା କେତେକ ନୀହାରିକାମାନଙ୍କର କ୍ରୀଡ଼ାସ୍ଥଳୀ ମାତ୍ର । ନୀହାରିକା ଶବ୍ଦଟି ଲାଟିନ୍ ଭାଷାର କୁହୁଡ଼ି ଶବ୍ଦ ( Nebuleo ) ର ରୂପାନ୍ତର । ଆକ୍ଷରିକ ଅର୍ଥରେ ନୀହାରିକାକୁ ଆମେ ଦୂର ଆକାଶର ତେଜସ୍ୱୀନ ଜ୍ୱଳନ୍ତପିଣ୍ଡ ବୋଲି ଧରି ନେଇପାରିବା ।

ଏହିସବୁ ପ୍ରକାଣ୍ଡ ଜ୍ୱଳନ୍ତ ପିଣ୍ଡର ଆଲୋକ ଲକ୍ଷ ଲକ୍ଷ କିଲୋମିଟର ଦୂର ବ୍ୟାପୃତ । ଅନନ୍ତ ଆକାଶରେ ଘୂରି ବୁଲୁଥିବା ଦୁଇଟି ବିରାଟକାୟ ନୀହାରିକା କାଳକ୍ରମେ ନିଜ ନିଜର ନିକଟବର୍ତ୍ତୀ ହେବାକୁ ଲାଗିଲେ । ଫଳତଃ ପରସ୍ପର ସହିତ ଖୁବ୍ ଜୋରରେ ଧକ୍କା ଖାଇ ଅନେକ ଖଣ୍ଡରେ ପରିଣତ ହୋଇଗଲେ । ଉଭୟଙ୍କ ମଧ୍ୟରୁ ବିଶେଷ ଭାବରେ ଆଘାତ ପ୍ରାପ୍ତ ନୀହାରିକା ନିଜସ୍ୱ ହରାଇଥିବା ବେଳେ ଅପରଟି ଧକ୍କାର ପ୍ରଭାବରେ କାହିଁ କେତେ ଦୂରକୁ ଚାଲିଗଲା ଯେ, ସେଇଦିନଠୁ ଆଉ ଫେରିନାହିଁ । ତାହାର ଇତିହାସ ସେଇଠିରେ ହିଁ ମରିଗଲା । କେବଳ କଳ୍ପନା କରାଯାଏ ଯେ, ସମ୍ଭବତଃ ସେ ଅନ୍ୟ ଏକ

ଆକାଶରେ ଆଜ୍ଜ ଏକ ପୃଥିବୀ ସର୍ଜ୍ଜନାରେ ବ୍ୟସ୍ତ ରହିଥିବ ପରା ! ଆମ ଆକାଶରେ ରହିଯାଇଥିବା ମହାଣିକା ଅବଶେଷ ନିଜ ନିଜକୁ ସୂର୍ଯ୍ୟ, ଚନ୍ଦ୍ର, ପୃଥିବୀ, ଗ୍ରହ ଓ ନକ୍ଷତ୍ର ଭାବେ ପରିଣତ କରିଇ ନେଲେ ।

ଉପରୋକ୍ତ ମତବାଦ ଦୁଇଟିରୁ କଏ ସତ କଏ ମିଛ ତାହା ଭାବିବା ତାହା ହେବା ନିଷ୍ପ୍ରୟୋଜନୀୟ । ଉଭୟ ଏକ ମତ ଯେ, ସୂର୍ଯ୍ୟ, ଚନ୍ଦ୍ର, ପୃଥିବୀ ଆଦି ଗ୍ରହ, ନକ୍ଷତ୍ର ଏକ ମାଆର ସନ୍ତାନ, ସୁତରାଂ ଏମାନଙ୍କ କ୍ଷେତ୍ରରେ ଭାଇଭଉଣୀଙ୍କ ବଂଶଗତ ଗୁଣର ପ୍ରକାଶ ମଧ୍ୟ ସୁସ୍ପଷ୍ଟ । ଏମାନଙ୍କୁ ନେଇ କଳ୍ପିତ ସୌରଜଗତର ପ୍ରତ୍ୟେକ ବସ୍ତୁ ପରସ୍ପରକୁ ନିଜ ଆଡ଼କୁ ଆକର୍ଷିତ କରିଥାଆନ୍ତି । ଆକର୍ଷଣୀ ଶକ୍ତିର ପ୍ରଭାବ ପରସ୍ପରର ଆକାର ଅନୁପାତୀ କମ୍ ବେଶୀ ହୋଇଥାଏ । ସୂର୍ଯ୍ୟ ଆକାରରେ ତେରଗୁଣ ବଡ଼ ହୋଇଥିବାରୁ ଅନ୍ୟମାନେ ଏକ ଗାଣିତିକ ନିୟମାନୁପାତୀ ସୂର୍ଯ୍ୟ ଗ୍ରହ ପାଖରେ ଭିନ୍ନ ଭିନ୍ନ ସମୟ ଅନ୍ତରରେ ଥରେ ଘୂରି ଆସନ୍ତି । ଏହା ସୂର୍ଯ୍ୟଠାରୁ ଗ୍ରହମାନଙ୍କର ଦୂରତାର ଏକ ପ୍ରତ୍ୟକ୍ଷ ପରିମାପକ । ସୂର୍ଯ୍ୟଠାରୁ ଦୂରତାର ବୃଦ୍ଧି ହେଲେ ପରିକ୍ରମଣ କାଳକ୍ରମେ ବୃଦ୍ଧି ପାଇଥାଏ ଏବଂ ଦୂରତା ହ୍ରାସ ପାଇଲେ ପରିକ୍ରମଣ କାଳ ହ୍ରାସ ପାଇଥାଏ । ଉଦାହରଣ ସ୍ୱରୂପ, ସୂର୍ଯ୍ୟର ନିକଟତମ ଗ୍ରହ "ବୁଧ" ୮୮ ଦିନରେ ଥରେ ପରିକ୍ରମଣ ଶେଷ କରିଥିବା ବେଳେ ପୃଥିବୀକୁ ୩୬୫ ଦିନ ( ଏକବର୍ଷ ) ଲାଗେ । ସେହିପରି ବୃହସ୍ପତି, ବରୁଣ, ଯମ ଆଦିଙ୍କୁ ଅନେକ ବର୍ଷ ମଧ୍ୟ ଲାଗିଯାଇଥାଏ ଥରେ ସୂର୍ଯ୍ୟକୁ ଘେରିବା ପାଇଁ । ସୌରଜଗତର ପ୍ରତ୍ୟେକ ଗ୍ରହ, ଉପଗ୍ରହ "କେପ୍ଲରଙ୍କ ଗାଣିତିକ ନିୟମ"ର ବଶବର୍ତ୍ତୀ ହୋଇ କାର୍ଯ୍ୟ କରନ୍ତି ।

ବର୍ତ୍ତମାନକୁ ବାଦ୍ ଦେଇ ପୁରାଣ ପୋଥିର ପୃଷ୍ଠା ଓଲଟାଇଲେ ଆମେ ଦେଖୁ ଯେ, ହିରଣ୍ୟ ମୁନି, ଋଷିମାନେ ଆମ ଅଜଣାରେ ଶହ ଶହ ସୌରଜଗତ ଥିବାର ପ୍ରମାଣ ଦେଇଛନ୍ତି । କଏ କହିବ ଆଉ କୋଟିଏ ସୌରଜଗତ ଯେ, ଭବିଷ୍ୟତରେ ବିଜ୍ଞାନ ପୃଷ୍ଠାକୁ ନ ଆସିବ ବୋଲି । କେବଳ ସମୟ ହିଁ ଏ ସବୁର ସମୁଚିତ ଜବାବ ଦେଇପାରିବ ।

ସୂର୍ଯ୍ୟ, ଚନ୍ଦ୍ର, ପୃଥିବୀ ଓ ଗ୍ରହମାନଙ୍କ ଉତ୍ପତ୍ତି ସମ୍ବନ୍ଧରେ ସମ୍ୟକ୍ ଧାରଣା ପାଇବାରେ ଯେତିକି ଆନନ୍ଦ ତା'ଠାରୁ ଢ଼େରଗୁଣ ଅଧିକ ବସ୍ତୁ ଲୁଚିରହିଛି ସଦାଜାତ ପ୍ରଶ୍ନବାଚୀ ମଧ୍ୟରେ । ଗୋଟିଏ ଉତ୍ପତ୍ତି ସ୍ଥଳ ଏବଂ ଏକପ୍ରକାର ପ୍ରାକୃତିକ ପରିବେଷ୍ଟନୀ ମଧ୍ୟ ଦେଇ ଗତିକରି ଆସିଥିବା ବେଳେ ଏମାନଙ୍କର ଗଠନ ଓ ପ୍ରକୃତି ମଧ୍ୟରେ ଏତେ ବିଷମତା କାହିଁକି ? ଜଣେ ଜୀବଜଗତରେ ରଙ୍ଗୀନ ସ୍ୱପ୍ନରେ ସ୍ୱର ଉଠୁଥିବା ବେଳେ ଅନ୍ୟଜଣେ ସମ୍ପୂର୍ଣ୍ଣ ଭାବେ ନୀରବ, ନିଥର ? ଜଣେ ଶାନ୍ତ, ସୌମ୍ୟ ଆଲୋକରେ ମନ କିଣିନେଇ ପାରିବା ବେଳେ ଅନ୍ୟଜଣେ ଏତେ ରୌଦ୍ର ଏବଂ ଅସହ୍ୟ କାହିଁକି ? ଆମେ ପୃଥିବୀବାସୀ ବର୍ଷସାରା ଋତୁ ପରିବର୍ତ୍ତନରୁ ସ୍ୱାଦ ବୁଝିବାକୁ ପାଉଥିବା ବେଳେ ସୂର୍ଯ୍ୟ ଅହରହ ଜଳିବାରେ ବ୍ୟସ୍ତ । ସେ ଜ୍ୱଳନର ଅନ୍ତନାହିଁ । ସେଇ ଅନନ୍ତକାଳରୁ ଅଜଯାଏଁ ଜଳି ଜଳି ବିଶ୍ରାମ ନେବାକୁ ଚିନ୍ତା କରିନାହାନ୍ତି ବୋଧହୁଏ । ଏ ସୂର୍ଯ୍ୟ ଆମ ଉପକାର ପାଇଁ ଆଉ କେତେ କାଳ ଏମିତି ଜଳି ପାରିବେ ? ଏହା ଏକ ସାଧାରଣ ପ୍ରଶ୍ନ ।

ବୈଜ୍ଞାନିକମାନେ ମତ ଦିଅନ୍ତି, ସୂର୍ଯ୍ୟର ଜଳନ ଆମ ଘରେ ଜଳୁଥିବା ସାଧାରଣ ଦହନ ଭଳି ନୁହେଁ । ସାଧାରଣ କାଠ, କୋଇଲା ପ୍ରଭୃତିର ଦହନରେ ଆମେ ଉତ୍ତାପ ଓ ଆଲୋକ ଶକ୍ତି ପାଉଥାଉ ଏହା ନିଶ୍ଚିତ । କିନ୍ତୁ କେବେ କଳ୍ପନା କରିଛୁ ଯେ, ଏହି ଦହନ ପ୍ରକ୍ରିୟା ଫଳରେ କେତେ ବସ୍ତୁର ନଷ୍ଟ ହୋଇଥାଏ । ଏକ କୁଇଣ୍ଟାଲ୍ କାଠ ଜଳିଲେ ଆମେ ଦେଢ଼ଶ ଟଙ୍କା ଖର୍ଚ୍ଚ କରୁ । ହେଲେ ମିଳୁଥିବା ଆଲୋକ, ଉତ୍ତାପକୁ ନେଇ ସୂର୍ଯ୍ୟରୁ ମିଳୁଥିବା ଆଲୋକ ଓ ଉତ୍ତାପର କଳ୍ପନା କରିବା ବିଡମ୍ବନା ନୁହେଁ ତ ଆଉ କ'ଣ ? ତାଳଚେର, ଇବ୍‌ଭାଲି ଓ ଝରିଆ ଭଳି ତାପଜ ବିଦ୍ୟୁତ୍ ଉତ୍ପାଦନ କେନ୍ଦ୍ରରେ ବ୍ୟବହୃତ ଜାଳେଣୀର ବସ୍ତୁତ୍ୱରୁ ସୂର୍ଯ୍ୟରେ ଜଳୁଥିବା ସାମାନ୍ୟ ବସ୍ତୁତ୍ୱର କେତେ ହେବ ତାହା ଦହନରେ ଅନୁମେୟ । ସୃଷ୍ଟିର ପ୍ରଥମ ସକାଳଠାରୁ ଆଜି ପର୍ଯ୍ୟନ୍ତ କେତେ ବସ୍ତୁତ୍ୱର ଦହନଜନିତ ନଷ୍ଟ ହୋଇସାରିଲେଣି ତାହା ଏକ ସ୍ଥାନରେ ପୁଞ୍ଜିଭୂତ ହୋଇ ରହିବା ଏକାନ୍ତ ଅସମ୍ଭବ । ସବୁଠାରୁ ବଳିଷ୍ଠ ଯୁକ୍ତି ହେଉଛି, ସୂର୍ଯ୍ୟର ଆକାର ପୃଥିବୀର ତେର ଲକ୍ଷଗୁଣ ହୋଇଥିବା ବେଳେ ଏହାର ବସ୍ତୁତ୍ୱ ପୃଥିବୀ ବସ୍ତୁତ୍ୱର ମାତ୍ର ତିନିହଜାର ଗୁଣ ବୋଲି

ଅନୁମେୟ । ଏତେ କମ୍ ବସ୍ତୁରୁ ନେଇ ଏତେ ବେଶୀ ଆଲୋକ ଓ ଉତ୍ତାପର ପରିକଳ୍ପନା କରାଯାଇ ନ ପାରେ । ଏହା କୌଣସି ପରିସ୍ଥିତିରେ ସାଧାରଣ ଦହନ ହୋଇ ନ ପାରେ । କାରଣ ସାଧାରଣ ଦହନ ଜନିତ ବସ୍ତୁକ୍ଷୟ ସୂର୍ଯ୍ୟକୁ ଅତ୍ୟନ୍ତ ସ୍ୱଳ୍ପାୟୁ କରି ଦେଇଥାନ୍ତା । ସ୍ୱନଷ୍ଟ ଦହନଶୀଳ ପଦାର୍ଥରେ ଗଠନରୁ ଦହନର ପରିମାଣ ନିର୍ଣ୍ଣୟ କରାଯାଇପାରେ । ବ୍ୟବହୃତ ପଦାର୍ଥ ମଧ୍ୟ ଅତ୍ୟଧିକ କଠିନ ହୋଇଥାଏ ତେବେ ଦହନକାଳ ଦୀର୍ଘସ୍ଥାୟୀ ହୁଏ । ଏହି ପରିପ୍ରେକ୍ଷୀରେ ବିଚାର କଲେ ସୂର୍ଯ୍ୟ ଏକ ସୁଶକ୍ତ ପିଣ୍ଡ ହେବା କଥା । ଏହାକୁ ବଜ୍ରଠାରୁ ଅଧିକ କଠିନ କହିଲେ ଅତ୍ୟୁକ୍ତି ହୁଅନ୍ତା ନାହିଁ । କିନ୍ତୁ ତାହାର ଓଜନ ଜଣାଇ ଦିଏ ଯେ, ସୂର୍ଯ୍ୟ ଏକ ପ୍ରକାଣ୍ଡ ଜ୍ୱଳନ୍ତ ଗ୍ୟାସୀୟ ପିଣ୍ଡ ମାତ୍ର । ସୁତରାଂ ଆମକୁ ସୂର୍ଯ୍ୟଠାରୁ ମିଳୁଥିବା ଉତ୍ତାପ ଓ ଆଲୋକ ଦହନର ପ୍ରଭାବ ନହୋଇ ଏକ ରସାୟନିକ ପ୍ରକ୍ରିୟାର ରୂପାନ୍ତର ହେବା ସର୍ବାଦୌ ସମୀଚିନ । ତେଜସ୍କ୍ରିୟତା ବିଜ୍ଞାନୀମାନଙ୍କ ମତରେ କ୍ଷୁଦ୍ର କ୍ଷୁଦ୍ର ପରମାଣୁଗୁଡ଼ିକ ରସାୟନିକ ପ୍ରକ୍ରିୟା ପ୍ରଭାବରେ ନୂତନ ପଦାର୍ଥ ତଥା ଶକ୍ତିରେ ରୂପାନ୍ତରିତ ହୋଇ ଥାଆନ୍ତି । ପରମାଣୁମାନେ ନିଜର ଶକ୍ତି ବିନିମୟରେ ଅମାପ ଶକ୍ତି ପ୍ରଦାନକ୍ଷମ ହୋଇଥାଆନ୍ତି । ଉକ୍ତ ଶ୍ରେଣୀର ପରମାଣୁ ମାନଙ୍କ ତେଜସ୍କ୍ରିୟ ପରମାଣୁ ଭାବେ ନାମିତ କରା ଯାଇଥାଏ । ସୂର୍ଯ୍ୟ ପୃଷ୍ଠରେ ଥିବା ହିଲିୟମ୍ ପରମାଣୁ ଖୁବ୍ ତେଜସ୍କ୍ରିୟ ଏବଂ ଶକ୍ତିର ଉତ୍ସ । ତାହାର ପ୍ରଭାବରେ ସୂର୍ଯ୍ୟ ଆଜି ସକଳ ଶକ୍ତିର ଆଧାର । ଅବିରତ ଚାଲିଲେ ମଧ୍ୟ ଏହି ତାପ ଓ ଆଲୋକ ବିକିରଣ ପ୍ରକ୍ରିୟା ଆଜି ଅନ୍ୟୁନ ୧୫୦ କୋଟି ବର୍ଷ ସୂର୍ଯ୍ୟରେ ଚାଲିବ ବୋଲି ବୈଜ୍ଞା- ନିକମାନେ ଦୃଢ଼ ମତବ୍ୟକ୍ତ କରନ୍ତି । ହିଲିୟମ ଭଳି କ୍ଷୁଦ୍ରାତି କ୍ଷୁଦ୍ର ପରମାଣୁ ୬୦୦୦ ସେଲସିୟସ୍ ତାପମାତ୍ରା ବିକିରଣକ୍ଷମ ହୋଇପାରନ୍ତି ଏଥିରୁ ସ୍ପଷ୍ଟଭାବେ ପ୍ରମାଣିତ ହୁଏ ଯେ, ସୂର୍ଯ୍ୟ କେବେ ଜନଦେହଳର ସ୍ୱାଦ ଚାଖି ନ ଥିଲା କି ଚାଖିବ ନାହିଁ ମଧ୍ୟ ।

ସୂର୍ଯ୍ୟଙ୍କୁ ବାଦ୍ ଦେଲେ ଚନ୍ଦ୍ର ଆମର ବେଶ୍ ଜଣାଶୁଣା, ପୁରାଣ କଥାରେ ବିଶ୍ୱାସ ରଖିଲେ ଚନ୍ଦ୍ରରଜାର ମଧ୍ୟ ଅସୁମାରି ଧନ ସମ୍ପଦ, ଘୋଡ଼ା, ହାତୀ ଥିଲେ । ଯାନବାହାନର ସୁଅ ମଧ୍ୟ ଚନ୍ଦ୍ରରେ ପ୍ରତିଦିନ ଛୁଟୁଥିଲା । ଏସବୁ ଅତୀତ ଦିନରେ ଚନ୍ଦ୍ରରେ ପ୍ରାଣୀ ଜଗତର ପ୍ରମାଣ ଦେଇଥାଏ । କିନ୍ତୁ ଅଜିର

ଚନ୍ଦ୍ର ଏକ ଶାନ୍ତ, ସ୍ନିଗ୍ଧ ମୃତପିଣ୍ଡ ମାତ୍ର । ମଣିଷ ପୃଷ୍ଠକୁ ଭୁଲି ନ ଯାଇ ଲୁନାଖୋଡ୍ ଓ ଆପୋଲୋ ଯାନରେ ଚଢି ଚନ୍ଦ୍ର ଉପରେ ଦେଖାଏ ବୁଲି ଆସିଲଣି । ବୈଜ୍ଞାନିକ ଆର୍ମଷ୍ଟ୍ରଙ୍ଗ, ଅଲଡ୍ରିନ ପ୍ରଭୃତି ଚନ୍ଦ୍ରରେ ନାଟକୁଢ ଚନ୍ଦ୍ରରୁ ମୁଠାଏ ମାଟି ନେଇ ଆସିଥିଲେ । ଏହା ଚନ୍ଦ୍ରର ଏକ ଅଂଶରେ ମାଟି ମାତ୍ର । ବୈଜ୍ଞାନିକ ବିଶ୍ଳେଷଣରୁ ଜଣାପଡ଼େ, ସେଠିକାର ବାୟୁମଣ୍ଡଳରେ ଅତ୍ୟଧିକ ପରିମାଣ ଅଙ୍ଗାରକାମ୍ଳ ବାଷ୍ପ ରହିଅଛି । ଏହା ଜୀବଜଗତ ପକ୍ଷେ କ୍ଷତିକାରକ । ତଥାପି କିଏ କହିବ । ଚନ୍ଦ୍ରରେ ଜୀବ ସୃଷ୍ଟି ନ ଥିଲା ବୋଲି । ହୁଏତ ଆମକୁ ଆଉ କିଛି ବର୍ଷ ଅପେକ୍ଷା କରିବାକୁ ପଡ଼ିପାରେ ।

ସୌରଜଗତର ଅନ୍ୟାନ୍ୟ ଗ୍ରହମାନଙ୍କ ମଧ୍ୟରୁ ମଙ୍ଗଳ ବୈଜ୍ଞାନିକ ମାନଙ୍କର ବିଶେଷ ଦୃଷ୍ଟି ଆକର୍ଷଣ କରେ । ଏହା ପଛରେ ଅନେକ ତଥ୍ୟସମ୍ପୃ ଏକଣିଷ୍ଠ ଯୁକ୍ତି ରହିଛି । ପ୍ରଥମତଃ ମଙ୍ଗଳ ପୃଥିବୀର ନିକଟତମ ଗ୍ରହ । ଆକା-ରରେ ଏହା ପୃଥିବୀ ସହିତ ଅନେକାଂଶରେ ସମାନ । ପୃଥିବୀ ଆକାରରେ ଦୁଇଗୁଣ ବଡ଼ ହେଲେ ମଧ୍ୟ ମଙ୍ଗଳରେ ପୃଥିବୀ ଭଳି ଦିନରାତ ଓ ଋତୁ ପରି-ବର୍ତ୍ତନ ହୋଇଥାଏ । ଆମ ଦିନ ଓ ମଙ୍ଗଳର ଦିନର ସମୟସୀମା ପ୍ରାୟ ସମାନ ।

ବାୟୁମଣ୍ଡଳର ଗଠନ ଦୃଷ୍ଟିରୁ ବିଚାର କଲେ ମଙ୍ଗଳର ବାୟୁମଣ୍ଡଳରେ ଜଳୀୟ ବାଷ୍ପର ସୂଚନା ସ୍ପଷ୍ଟ ଭାବରେ ମିଳିଥାଏ । ଏହା ଜୀବ ଜଗତର ସ୍ଥିତିପାଇଁ ସର୍ବାଦୌ ଅନୁକୂଳ ସୂଚନା ।

ଅଧିକନ୍ତୁ ୧୮୮୭ ଖ୍ରୀଷ୍ଟାବ୍ଦରେ ଦୁଇଜଣ ଇଟାଲୀୟ ବିଜ୍ଞାନ ଟ୍ଲୋଭଣୀ ଓ ସିଆପାରେଲି ମତବ୍ୟକ୍ତ କରିଥିଲେ ଯେ, ମଙ୍ଗଳ ପୃଷ୍ଠରେ ଦେଖା ଯାଉଥିବା ଅନେକ କଳା କଳା ଦାଗ ନଦୀ, ହ୍ରଦ ଓ କେନାଲ୍ ପ୍ରଭୃତି ଜଳାଶୟ ହୋଇ ବାୟୁମଣ୍ଡଳର ଜଳୀୟବାଷ୍ପ ସହିତ ଏ ପ୍ରକାର ଯୁକ୍ତି ଅନୁପୂରକ । ଜଳ ସମ୍ପଦରୁ ମଙ୍ଗଳରେ କୃଷି ସମ୍ପଦ ଓ ଜନ ଜୀବନର ଅନୁମାନ ଏକ ବ୍ୟର୍ଥ କଳ୍ପନା କେବେ ହୋଇ ନ ପାରେ । ହୁଏତ ସେଠିକାର ଜନତା ଆମ ଅପେକ୍ଷା ଅଧିକ ସଭ୍ୟ, ଶିକ୍ଷିତ ହୋଇପାରନ୍ତି । ଏହା ସହିତ ତାଳ ଦେଇ ଅନ୍ୟ ଏକ

ମତବାଦ ଉପସ୍ଥାପନ କରଯାଇଥାଏ । ପୃଥିବୀର ବାୟୁମଣ୍ଡଳ ଓ ମଙ୍ଗଳର ବାୟୁମଣ୍ଡଳର ଗଠନ ସମ୍ପୂର୍ଣ୍ଣ ଭିନ୍ନ ହୁଏତ ଏହା ଜୀବଜଗତ ପକ୍ଷେ ଅନୁକୂଳ । କେବଳ ମାତ୍ର ଏଠାକାର ତାପମାତ୍ରା ପୃଥିବୀଠାରୁ କମ୍ ଅଟେ । ସେହିକ୍ଷେତ୍ରରେ ଆମ ପୃଥିବୀର ଏସ୍କିମୋମାନେ ତ ସମ୍ପୂର୍ଣ୍ଣଭାବେ ବରଫ ପୁରର ବାସିନ୍ଦା ।

ମଜା କଥାଟିଏ ହେଲା ବର୍ଷର ଭିନ୍ନ ଋତୁରେ ମଙ୍ଗଳ ପୃଷ୍ଠ ଭିନ୍ନଭିନ୍ନ ରଙ୍ଗ ଧାରଣ କରେ । ଏହାକୁ ବୈଜ୍ଞାନିକମାନେ ଉନ୍ନତ ପର୍ଯ୍ୟାୟକ୍ରମିକ କୃଷିର ନମୁନା ରୂପେ ବର୍ଣ୍ଣନାକ୍ତ ଦାବି ସମର୍ଥନ କରନ୍ତି । ତାହାହେଲେ ଜଣେ ମଙ୍ଗଳବାସୀ ପୃଥିବୀବାସୀ ଠାରୁ କୃଷି କ୍ଷେତ୍ରରେ ଢ଼େର ଉନ୍ନତ ଓ ସ୍ୱାବଲମ୍ବୀ ମଧ୍ୟ । ପୃଥିବୀ ପୃଷ୍ଠ ଓ ଅଭ୍ୟନ୍ତରରୁ ମିଳୁଥିବା ଭିନ୍ନ ଭିନ୍ନ ମୂଲ୍ୟବାନ ଧାତବ ପଦାର୍ଥ ଗୁଡ଼ିକର ସୂଚନା ମଧ୍ୟ ମଙ୍ଗଳ ପୃଷ୍ଠରେ ମିଳଥାଏ । ଅଧିକନ୍ତୁ ପୃଥିବୀର ମାଟି ଓ ମଙ୍ଗଳର ମାଟି ଗଠନ ଓ ପ୍ରକୃତି ଅନୁସାରେ ଅନେକାଂଶରେ ସମାନ ।

ଏ ସବୁକୁ ବାଦ୍ ଦେଲେ, ପୃଥିବୀର ଭିନ୍ନ ପ୍ରାନ୍ତରେ ଚହଳ ପକାଇ-ଥିବା ଉଡ଼ନ୍ତା ଥାଳିଆ ଓ ତାହା ମଧ୍ୟରୁ ମିଳିଥିବା ବିଚିତ୍ର ଶ୍ରେଣୀର ଚିଠିପତ୍ରରୁ ଆନ୍ୟଏକ ପୃଥିବୀର ମଣିଷ ପଠାଇ ଥିବାର ଆମ ବୈଜ୍ଞାନିକମାନେ ମତ ଦିଅନ୍ତି । ଏହା ଯେ, ମଙ୍ଗଳରୁ ଆସି ନ ଥିବ କଏ କହିବ ?

ସମସ୍ତ ପ୍ରମାଣକୁ ଗୋଟିଏ ଯାଗାରେ ଯୋଡ଼ି ଦେଲେ ଆଖି ଖୋସି ହୋଇଯାଏ । ବୃଥା ଗର୍ବ କରୁଥିବା ଅଣୁ ଯୁଗର ବାହାଦୁରୀଟମାନ ପୃଥିବୀର ବୈଜ୍ଞାନିକମାନଙ୍କ ଠାରୁ ଢ଼େର ଉନ୍ନତ ବଞ୍ଚନ ଅଛି ଅନ୍ୟଏକ ପୃଥିବୀରେ ।

ଏବେ ଆମେ ନିଜେ ଦିନ ମଧ୍ୟରେ ରହିଯାନ୍ତି । କଏ ଆମର ପୃଥିବୀ, ସୂର୍ଯ୍ୟ, ଚନ୍ଦ୍ର, ମଙ୍ଗଳ ଓ କଏ ପର । ତାହାର ପ୍ରମାଣ ପର ହାତରେ । ସେ ହିଁ ସମସ୍ତର ବଞ୍ଚନ ।



# ଚାଲି ନ ଜାଣିଲେ ବାଟର ଦୋଷ

କଥାରେ ଅଛି—

"ଲଙ୍ଗ ସ୍ୱେର
କକ୍ଷାନ୍ତ ସ୍ୱେର
ସ୍ୱେରଜ ସ୍ୱେରଜ
ବଡ଼ ସ୍ୱେର……।"

.  .

ଏହିକଥା ଆଜି କାଲିର ନୁହେଁ । ଆଖି ନ ପାଉଥିବା ଅନ୍ଧଟର କେତେ ଏକ ନିସ୍ୱାର୍ଥପର ମହାପୁରୁଷଙ୍କର ଭବିଷ୍ୟତ କର୍ଣ୍ଣଧାରମାନଙ୍କୁ ସରଳ ଭାଷାରେ ଚେତନାଟିଏ । ଉକ୍ତିଟିକୁ ଅସୁସ୍ଥ ମସ୍ତିଷ୍କର ଅହଂଭାବର ପରିପ୍ରକାଶ ରୂପେ ଗ୍ରହଣ ନ କରି ବରଂ ଉଦାର ସୁସ୍ଥ ମସ୍ତିଷ୍କର ମହାନ ଝପିକାଭାବେ ଗ୍ରହଣ ଶ୍ରେୟସ୍କର । ପ୍ରତ୍ୟେକ ସୁସ୍ଥ ସବଳ ମସ୍ତିଷ୍କଧାରୀ ଯେ ଦେଶ ଓ ଦଶର ଗଠନ ପଥରେ ଗୋଟିଏ ଗୋଟିଏ ମୌଳିକ କଣିକା ତାହା ଉକ୍ତିଟିର ନିହିତ ଅର୍ଥ । ସୁତରାଂ ନିଜ ନିଜର ମସ୍ତିଷ୍କକୁ ଅସୁସ୍ଥ ହେବାକୁ ନ ଦେବାଟି ଆମର ପ୍ରଥମ ଓ ପ୍ରଧାନ କର୍ତ୍ତବ୍ୟ । ଯେହେତୁ ଚାଳକ ବିଗିଡ଼ି ଗଲେ ଖୁବ୍ ନୂଆ କଣା ଗାଡ଼ି-ଟିଏ ମଧ୍ୟ ଆକସ୍ମିକ ଦୁର୍ଘଟଣା ଘଟାଇଥାଏ । ଯନ୍ତ୍ରପାତି ଠିକ୍ ଥିଲେ ନ ଥିବା ଭଳି । ଯନ୍ତ୍ର ତ ଚାଳକର ଅଧୀନ । ହେଲେ ତାକୁ କହିବ କିଏ ? ତଥାପି ଚାଳକ ପରିସ୍ଥିତିର ଦାସ ଏହା ସତ୍ୟ । ସୁତରାଂ ପରିସ୍ଥିତି ଠିକ୍ ରହିଲେ ଚାଳକ ଠିକ୍ ରହିବ ତଥା···। ବେଳେ ବେଳେ ବେଶ୍ ସ୍ୱାଭାବିକ ପରିଚିତ ହେଉଥିବା ମସ୍ତିଷ୍କ ଅସ୍ଥିର ହୋଇଥାଏ ବୋଲି ପ୍ରଖ୍ୟାତ ମନସ୍ତତ୍ତ୍ୱବିତ୍ ଫ୍ରେଏଡ୍ କହିଅଛନ୍ତି । ଏହା ତାଙ୍କର ଅନେକ ଗବେଷଣା ଲବ୍ଧ ଧନ । ଏହିଭଳି ଅସ୍ଥିରବସ୍ଥାକୁ ସ୍ୱପ୍ନାବସ୍ଥା ବୋଲି କୁହାଯାଏ । ବାହ୍ୟତଃ ସବୁ ଠିକ୍ ଠାକ୍ ଥାଇ ମଧ୍ୟ ଭିତର ଅବସ୍ଥାରେ ପରିବର୍ତ୍ତନ ଘଟେ । ତେବେ ଆମେମାନେ ସ୍ୱପ୍ନ ଦେଖୁ କାହିଁକି ଓ କେତେବେଳେ ଏହାର ଉତ୍ତରରେ ଫ୍ରଏଡ୍ କହନ୍ତି ।

"ପୃଥିବୀର ପ୍ରତ୍ୟେକ ମଣିଷ ମନରେ ଥାଏ ଅନେକ କାମନା, ବାସନା, କେତେକ ବାସ୍ତବ ଓ ଅନ୍ୟ କେତେକ ଅତ୍ୟନ୍ତ ଅବାସ୍ତବ ।"

ଉଦାହରଣ ସ୍ୱରୂପ ନିଜ ଘର ପେଟରେ ଟୋକନା ମଲାଇଥିବା ଲୋକଟି ଦେଖେ ବଡ଼ ଖାଇବାର ସ୍ୱପ୍ନ । ନିଜମନର ବାଲ୍ୟ ଜୀବନର ନବାବ ମୋଗଲ ବାଦଶାଙ୍କ ରଙ୍ଗମହଲ କଳ୍ପନା କରିବାକୁ ତାକୁ କିଏ ମନା କରିବ ? କହିଁ ନ ନିଶଜେଶ ବୟସରେ ପରି ରାଜକନ୍ୟାକୁ ବିଭା ହେବାର ମଧୁର କଳ୍ପନା ନ ଥିବା ବ୍ୟକ୍ତି ବୋଧହୁଏ ଛିଟ ଅଙ୍ଗରେ ଗଣି ହୋଇଥିବେ । ପାଠର ପ' ଅକ୍ଷର ବୁଝି ନ ଥିବା ପରୀକ୍ଷାର୍ଥୀର ଥାଏ ବିଶ୍ୱବିଦ୍ୟାଳୟର ସ୍ୱର୍ଣ୍ଣ ପଦକର ଆଶା । ଯେତେସବୁ ଅବାସ୍ତବ ଚିନ୍ତାକୁ ବାଦ୍ ଦେଲେ ଅନେକ ସମୟରେ ବାସ୍ତବ ଚିନ୍ତା ମଧ୍ୟ ଆମ ମନକୁ ମାଡ଼ି ବସିଥାଏ । ଆଶା ବୈତରଣୀରେ କେତେ ପାଣି ଅଛି ମାପିବାକୁ ବେଳ କାହିଁ । ସୁତରାଂ ମଣିଷର ମସ୍ତିଷ୍କ ସବୁବେଳେ ଜାଗ୍ରତ, କାର୍ଯ୍ୟରତ । ଯେତେସବୁ ବିଷୟ ଆମେ ଚିନ୍ତାକରୁ ସେସବୁ ଉଦ୍‌ବାସ୍ତୁ ଭଳି ଉଡ଼ି ନ ଯାଇ ମସ୍ତିଷ୍କରେ ଜାଗାମାଡ଼ି ରହିଯାଆନ୍ତି । ଫଳସ୍ୱରୂପ ମସ୍ତିଷ୍କର ଧାରଣ ଶକ୍ତି ମଧ୍ୟ କମି କମି ଯାଏ । ଚକାଏ ମୁଣ୍ଡରେ କେତେ ବା ଜାଗା । ଏ ପ୍ରକାର ପରିସ୍ଥିତିରେ ସମସ୍ତ ପୁଞ୍ଜିଭୂତ ଅବାସ୍ତବ କଳ୍ପନାକୁ ମସ୍ତିଷ୍କ ବାହାରକୁ ତାହାର କିଛି ନିଜର ଓଜନ କମାଇ ଦେବାକୁ ଚେଷ୍ଟାକରେ । କିନ୍ତୁ ଦିନସାରା ଆମେ ବିଭିନ୍ନ ପ୍ରକାର କାମରେ ବ୍ୟସ୍ତ ରହୁଥିବାରୁ ଏହା ସମ୍ଭବ ହୋଇପାରେନା । ତୁଷ୍ଣୀ ସମୟ ଆସେ ରାତିରେ ବିକମ୍ପିତ ହୃଦୟରେ ଆମେ ଶୋଇଗଲେ । ଅବଶ୍ୟ ସମସ୍ତଙ୍କ ପାଇଁ ନିଦରେ ଶୋଇବାର କୌଣସି ଏକ ଧରାବନ୍ଧା ନିୟମ ନ ଥିଲେ ମଧ୍ୟ ସାଧାରଣତଃ ମଣିଷ ରାତିରେ ଶୁଏ । ଏହା ପ୍ରକୃତିର ଦାନ କହିଲେ ଅଧିକ ପ୍ରଯୁଜ୍ୟ ହେବ । ନିଦ ବେଳେ ଶରୀରର ଅନ୍ୟାନ୍ୟ ଅଙ୍ଗ ପ୍ରତ୍ୟଙ୍ଗ ନିଶ୍ଚେଷ୍ଟ ହୋଇଗଲେ ମଧ୍ୟ ମସ୍ତିଷ୍କ ଥାଏ ଜାଗ୍ରତ । ଏହି ସୁଯୋଗ ନେଇ ସେ ଯାବତୀୟ ପ୍ରକାରର ପୂରଣୀୟ ଅପୂରଣୀୟ ଆଶା ଆକାଂକ୍ଷାକୁ ବାହାରକୁ ଠେଲିଦିଏ । ସେଗୁଡ଼ିକ ଚଳଚିତ୍ର ଭଳି ଆମକୁ ଜଣାଯାଏ । ଏହାହିଁ ସ୍ୱପ୍ନାବସ୍ଥା । ସୁତରାଂ ସ୍ୱପ୍ନକୁ ଅବଚେତନ ମନ ଦର୍ପଣରେ ଅପୂର୍ଣ୍ଣ କାମନା ବାସନାର ସାମୟିକ ପ୍ରତିଫଳନ କହିଲେ ଅତ୍ୟୁକ୍ତି ହେବ ନାହିଁ । ମଜାକଥା ସ୍ୱପ୍ନଟିଏ ଦେଖିଲେ ପରବର୍ତ୍ତୀ ସମୟ ହୁଏ ଉପଭୋଗ୍ୟ

ଅବଶ୍ୟ ନିଦ ବୁଡ଼ିଥିବା ଯାଏଁ । ନିଦ ଭାଙ୍ଗିଲେ ସବୁ ଶେଷ । ସତରେ ଏଇଥିପାଇଁ କୁହାଯାଏ "ଏତେ ସ୍ୱପ୍ନକୁ ସତ କାହିଁ ।" ଅଧିକନ୍ତୁ ଫ୍ରଏଡ୍ କହନ୍ତି "ସ୍ୱପ୍ନ ହିଁ ଅବଚେତନ ମନର ଗଞ୍ଜନୀୟ ଅବସ୍ଥା ।"

ଉପରୋକ୍ତ ଆଲୋଚନାରୁ ଆମେ ଏଇ ସିଦ୍ଧାନ୍ତରେ ଉପନୀତ ହେଉ ଯେ, ସ୍ୱପ୍ନ ଜାଗ୍ରତ ମନର ସହଚର ନ ହେଲେ ମଧ୍ୟ ଅବଚେତନ ମନର ଏଇ ବସ୍ତୁଟି ସମାଜରେ କାଳକାଣ୍ଡ ସୃଷ୍ଟି କରେ । ତେଣୁ ମଣିଷ ଜୀବନରେ ସ୍ୱପ୍ନର ପ୍ରଭାବକୁ ସମ୍ପୂର୍ଣ୍ଣ ଏଡ଼ାଇ ଦିଆଯାଇପାରିବ ନାହିଁ । ଉଦାହରଣ ସ୍ୱରୂପ ଆମେ ଅନେକ ମାନସିକ ବିକାର ଗ୍ରସ୍ତ ରୋଗୀଙ୍କୁ ନେଇପାରିବା । ମନସ୍ତତ୍ତ୍ୱବିତ୍ମାନେ ଯୁଗଯୁଗ ଧରି ପରୀକ୍ଷା ଚଳାଇ ଏଇ ତଥ୍ୟଟି ଆବିଷ୍କାର କରିଅଛନ୍ତି ।

ବୈଜ୍ଞାନିକ ପରୀକ୍ଷାରୁ ଜଣାପଡ଼େ ଯେ, ଆମେ ସବୁ ବାହାରକୁ ଖୁବ୍ ଭଦ୍ର ଓ ଚିକ୍କଣ ଜଣା ପଡ଼ୁଥିଲେ ମଧ୍ୟ ଭିତରେ ଆମେ ଏକତମ ଅସୁସ୍ଥ । ଯଦି ସେପରି ମହାକାଳ ଘଟିବ । ଏଇଭଳି ସ୍ୱପ୍ନାଭିଳାଷୀମାନେ ଚଳଚିତ୍ର ତାଙ୍କାରେ ସଚରାଚର ନାମକରା ବ୍ୟକ୍ତି ହେବା ଅଭିଳାଷରେ ହତ୍ୟା, ଲୁଣ୍ଠନ, ଧର୍ଷଣ ଜନିତ ବଧୂ ହତ୍ୟାର ସଂଖ୍ୟା ବଢିବାକୁ ଲାଗେ । ସେମାନଙ୍କୁ ପ୍ରଶ୍ନକଲେ ନିର୍ଭୀକ ଉତ୍ତର ଆସେ "ଏଥିରେ ଅନ୍ୟାୟ କ'ଣ ? ଏହା ତ ମଣିଷ ପର ମଣିଷର କାର୍ଯ୍ୟ । ଜଣକୁ ଭଲ ନ ଲାଗିଲେ ଅନ୍ୟଜଣକୁ ତ ଭଲ ଲାଗୁଛି ।"

ପ୍ରକୃତରେ ଅସାମାଜିକ କାର୍ଯ୍ୟର ସଂଜ୍ଞା ଆଇନ୍ଷ୍ଟାଇନ୍ଙ୍କ ଆପେକ୍ଷିକ ତତ୍ତ୍ୱ ଭିତ୍ତିରେ ସମ୍ପୂର୍ଣ୍ଣ ଭାବେ ଆପେକ୍ଷିକ । ଦେଶ କାଳପାତ୍ରକୁ ନେଇ ଏହାର ସଂଜ୍ଞା ନିରୂପିତ ହୁଏ । ଆମ ଦେଶରେ ନାରୀର ମାଆର ସମ୍ମାନ ଦେବାପାଇଁ ଶିକ୍ଷା ଦିଆ ଯାଉଥିଲା ବେଳେ ଏଣେ ଏସ୍କିମୋ ପକ୍ଷରେ ତାହା ଏକାନ୍ତ ଅଗ୍ରାହ୍ୟ । ସେ ଘରକୁ ଆସିଥିବା ଅତିଥିଙ୍କ ବ୍ୟବହାର ପାଇଁ ନିଜ ସ୍ତ୍ରୀକୁ ଛାଡ଼ିଦିଏ । ସେଠିକାର ଏହା ଚଳଣି । ତେଣୁ ଆମକୁ ଯାହା ଖରାପ ଲାଗେ । ବୋଧହୁଏ ଏଇସବୁ ବ୍ୟତିକ୍ରମକୁ ଆଖି ଆଗରେ ରଖି ଆମେ କହୁଥାଉ— "ଦେଶକେ ଫାଙ୍କ୍, ନଈକେ ବାଙ୍କ୍ ।"

ତଥାପି ବୃଦ୍ଧି ହୁଏନା ନିଜକୁ ଶିକ୍ଷା, ସଦ୍ୟବହାର ପ୍ରଭୃତି ରୂପେ ଚିତ୍ରିମ ପିଟୁଥିବା ତରୁଣ ଶକ୍ତିକଣ ମଣିଷଟି ମଧ୍ୟରେ ଏ ପଶୁ ପ୍ରବୃତ୍ତିର ଉଦ୍ରେକ ହୁଏ ହୁଏ କାହିଁକି ? ଅଧିକ ସଦ୍ୟବହାର ସ୍ୱତନ୍ତ୍ର୍ୟ ଭରା ପାଶ୍ଚାତ୍ୟ ଦେଶ କଥା ନ କହିଲେ ଭଲ । ଅବଶ୍ୟ ଆମେ ଯେ ନିର୍ମଳ ସାଧୁତା' ନୁହେଁ । ପାଶ୍ଚାତ୍ୟର ଅନୁକରଣରେ ଦିନକୁ ଦିନ ଆମ ଯୁବ ସମାଜରେ ଅସାମାଜିକତାର ପ୍ରବୃତ୍ତି ଏତ୍ପ୍ରସରେଗ ଭଳି ବ୍ୟାପିବାରେ ଲାଗିଛି । ଏହାର ଶେଷ କେଉଁଠି ଓ କେବେ ହେବ କହିବ ? ଆଧୁନିକ ମନସ୍ତତ୍ତ୍ୱବିତ୍‌ମାନଙ୍କ ଗବେଷଣା ଲବ୍‌ଧ ଫଳରୁ ଜଣାପଡ଼େ । ଏ ପ୍ରକାର ପ୍ରବୃତ୍ତି ସାଧାରଣତଃ ୧୮ ବର୍ଷରୁ ୨୫ ବର୍ଷ ବୟସ ମଧ୍ୟରେ ସର୍ବାଧିକ । ଅବଶ୍ୟ ଅନ୍ୟମାନଙ୍କର ସ୍ୱଭାବମୂର୍ତ୍ତି ଯେ ନିର୍ମଳ ତାହା ନୁହେଁ । ଉପରୋକ୍ତ ବୟସରେ ଉଦ୍ଭଟ ସ୍ୱପ୍ନର ମାତ୍ରା ଥାଏ ଅଧିକ ।

ପ୍ରତ୍ୟେକ ସୃଷ୍ଟି ପଛରେ କିଛି ଅଦୃଷ୍ଟି ନିହିତ । ସେହିଭଳି ଅସାମାଜିକ କାର୍ଯ୍ୟ କଳାପର ଭିତ୍ତିଭୂମି ମଧ୍ୟ ଅସୁସ୍ଥ ବାୟୁମଣ୍ଡଳ ମଧ୍ୟରୁ ଆସିଅଛି । ମୁଖ୍ୟତଃ ଆମ ନଜରକୁ ଆସୁଥିବା ସାମ୍ଭାବ୍ୟ କାରଣଗୁଡ଼ିକ ତିନି ଶ୍ରେଣୀର । ଯଥା— ସାମାଜିକ, ବଂଶଗତ ଓ ଅର୍ଥନୈତିକ ।

ମନସ୍ତତ୍ତ୍ୱବିତ୍‌ମାନେ କହନ୍ତି ଅସାମାଜିକ କାର୍ଯ୍ୟ ପ୍ରବୃତ୍ତି ସମ୍ପୂର୍ଣ୍ଣ ବଂଶଗତ ହୋଇ ନ ପାରେ । ପ୍ରତ୍ୟେକ ଚୋରର ବା ଡକାୟତର ପିଲା ଚୋର ବା ଡକାୟତଟିଏ ହୋଇ ବାହାରି ନ ଥାନ୍ତି । ତଥାପି ଏ ପ୍ରକାର ପ୍ରବୃତ୍ତି ସମ୍ପୂର୍ଣ୍ଣ ରୂପେ ବଂଶଗତ ପ୍ରଭାବମୁକ୍ତ ହୋଇପାରେ ନାହିଁ ମଧ୍ୟ । କେତେକ କ୍ଷେତ୍ରରେ ଏହାର ପୁରୁଷାନୁକ୍ରମିକ ପ୍ରଭାବ ଲକ୍ଷ୍ୟ କରାଯାଇଅଛି । ତେଣୁ ଆମେ କହୁଥାଉ " Like begets like. " ମୋଟାମୋଟି ଭାବରେ ଦେଖାଯାଉଛି ଯେ, ଏ ପ୍ରକାର ଦୃଷ୍ଟାନ୍ତ ଶତକଡ଼ା ତିରିଶ ଭାଗ ମାତ୍ର । ଜଣେ ଦୁର୍ଦ୍ଦାନ୍ତ ଡକାୟତର ପିଲା ମଧ୍ୟ ସମାଜ ସଂସ୍କାରକ ହେବାର ନମୁନା ଆମପାଇଁ ବିରଳ ନୁହେଁ । ରାମାୟଣ ରଚୟିତା ଆଦିକବି ମହର୍ଷି ବାଲ୍ମୀକି ଥିଲେ କୁଖ୍ୟାତ ନରହନ୍ତା ରତ୍ନାକର । କିନ୍ତୁ ତାଙ୍କର ପିତା, ମାତା, ସ୍ତ୍ରୀ, ପିଲା ଥିଲେ ଏ ବୟସରେ ପୁରାପୁରି ଅଜ୍ଞ । ଅନ୍ୟପକ୍ଷରେ ଇତିହାସ କହେ ଉତ୍ତର ଭାରତର ଠଗମାନେ ବଂଶାନୁକ୍ରମିକ ଭାବେ ଏ ବୃତ୍ତିରେ ହେଁଠ ଯୋଗି ଆସିଥିଲେ । ଅମରେ ଓହୋ

ମାଟିରେ ମାଘମାସରେ କେତେକ ଦେଶାଚାରରେ ନରବଳୀ ଦିଆଯାଉଥିଲା । ଖଅନ୍ତା ମଣିଷରେ ରକ୍ତ ଦେବଙ୍କୁ ଦେବାପାଇଁ ସେମାନେ ଉକ୍ରପଷ୍ଟା ଜାଗିଷ୍ଣ ଫଞ୍ଜି ଦେଉଥିଲେ । ପ୍ରହ୍ଲଦାନୁ ହମିକ ଭାବେ ଏ ପ୍ରଥା କମ୍ବଦନ୍ତୀ ମାତ୍ର । ଏବେ ମଧ୍ୟ କନ୍ଧ ସମାଜରେ ମେରିଆ ପ୍ରଥା ରହିଥିବାର ପ୍ରମାଣ ମିଳୁଅଛି । ସୁତରାଂ ଅସାମାଜିକ ବ୍ୟକ୍ତିତ୍ୱ ସମ୍ପୂର୍ଣ୍ଣ ଭାବେ ନ ହେଲେ ମଧ୍ୟ ଆଂଶିକ ଭାବେ ବଂଶଗତ ଗୁଣର ପ୍ରଭାବ । ଏ କ୍ଷେତ୍ରରେ ସ୍ପଷ୍ଟ ପ୍ରମାଣ ଦିଅନ୍ତି ସୋଭିଏତ୍ ମନସ୍ତତ୍ତ୍ୱବିତ୍ ବେଜାନୋଭ । ସେ ମୁଖ୍ୟତଃ ଜାଆଁଳା ଛୁଆମାନଙ୍କୁ ନେଇ ପରୀକ୍ଷା ଚଳାଇ ଥିଲେ । ତାଙ୍କ ମତରେ ପ୍ରତି ୫୦ ଯୋଡ଼ା ଜାଆଁଳା ଛୁଆଙ୍କ ମଧ୍ୟରେ ୬୦% କ୍ଷେତ୍ରରେ ଉଭୟ ଛୁଆ ଏ ପ୍ରକାର ଅସାମାଜିକ କାର୍ଯ୍ୟଲିପ୍ତ । କେବଳ ୩୦% ଯାର ଛୁଆ ଉତ୍ତମ ସ୍ୱଭାବ ନେଇ ବଢ଼ିଚାଲନ୍ତି । ସୁତରାଂ ଏହାକୁ ପରିବେଶରେ ଖେଳ ରୂପେ ବେଜାନୋଭ ପ୍ରତିପାଦନ କରନ୍ତି । ଅନ୍ୟ କେତେକ ଦୋଷୀଠାରୁ ଜଣାପଡ଼ିଛି "ମଣିଷ ବଂଶଗତ ଗୁଣର ଏକ ଉଦର ଛାପ ମାତ୍ର । ଏବେକ କେତେକ ସ୍ଥଳରେ ଅସାମାଜିକ କାର୍ଯ୍ୟ ଲିପ୍ତ ମଣିଷମାନଙ୍କ ମଧ୍ୟରେ ରକ୍ତଗତ ସମ୍ପର୍କ ପରିଲକ୍ଷିତ ହୁଏ । ସାଧାରଣତଃ ରକ୍ତ ସମ୍ପର୍କୀୟ ମାଉସୀ ପୁଅ, ପିଉସୀ ପୁଅ, ମାମୁଁ ପୁଅମାନଙ୍କ କ୍ଷେତ୍ରରେ ଏ ପ୍ରକାର ପ୍ରବୃତ୍ତି ପ୍ରବଳ । ଏମାନେ ପ୍ରଧାନତଃ ବାଳ ଅପରାଧୀ । ପ୍ରାୟ ଶତକଡ଼ା ପଞ୍ଚାନବେ ଭାଗ ବାଳ ଅପରାଧୀ ଗୋଟିଏ ପରିବାର ମଧ୍ୟରୁ ଆସିଥିବା ବେଳେ ଶତକଡ଼ା ପଚାଶଭାଗ ରକ୍ତ ସମ୍ପର୍କୀୟ ହୋଇଥାଆନ୍ତି । ବାଳ ଅପରାଧୀମାନେ କୁସଙ୍ଗ ଓ କୁସଙ୍ଗର ଦାସ । ସୁତରାଂ ଏହାକୁ "ପରିବାରର ଦାନ" ନ କହି "ପରିବେଶର ଦାନ" କହିବା ଅଧିକ ସମୀଚିନ ।

ଆଜ ଟିକଏ ଉନ୍ନତ ଧରଣର ବୈଜ୍ଞାନିକ ପରୀକ୍ଷଣରୁ ଇଟାଲୀୟ ଡାକ୍ତର ଲୋମ୍ବ୍ରୋସୋ ଅସାମାଜିକ କାର୍ଯ୍ୟକଳାପକୁ ଏକ ଶାରୀରିକ ପ୍ରକୃତି ବୋଲି କହି ଅଛନ୍ତି । ତାଙ୍କ ମତରେ କୁ ପ୍ରବୃତ୍ତି ଓ ଶାରୀରିକ ଗଠନ ଓତପ୍ରୋତ ଭାବେ ଜଡ଼ିତ । ପ୍ରତ୍ୟେକ ଅସାମାଜିକ ବ୍ୟକ୍ତିର ଦେହରେ ଥାଏ ବଣ ମଣିଷ ଭଳି କଦାକାର ଓ ରୁକ୍ଷ । ସାଧାରଣ ମଣିଷ ଅପେକ୍ଷା ଅପରାଧୀ ଦେହରେ ଥାଏ ଏକ ଅପେକ୍ଷାକୃତ ବଡ଼ ମୁଣ୍ଡ । ପ୍ରଶସ୍ତ କପାଳ ଓ ଉଭୟଙ୍କର ଭାବେ ବଡ଼ ଦୁଇଟି ଆଖି । ଆଖି ଦୁଇଟି ପିଲ୍ଲଦନରୁ ଗାଢ଼ ରକ୍ତବର୍ଣ୍ଣ ଧାରଣ କରିଥାଏ ।

ଲେମ୍ବ୍ରୋସୋଙ୍କ ମତବାଦ ମଧ୍ୟ ସୁବିଧାର ନିର୍ଭୁଲ ନୁହେଁ । ଏହାର ସତ୍ୟତା ସୀମିତ । ଅନେକ କ୍ଷେତ୍ରରେ ଏ ପ୍ରକାର ଶାରୀରିକ ଗଠନ ଥିବା ବ୍ୟକ୍ତି ମଧ୍ୟ ବିଖ୍ୟାତ ବୈଜ୍ଞାନିକ, ସାତ୍ତ୍ୱିକ ହେବାର ପ୍ରମାଣ ଅଛି । ନାଟ୍ୟକାର ଜର୍ଜ ବର୍ଣ୍ଣାଡ଼ଶ, ମହାମହୋପାଧ୍ୟାୟ ସଦାଶିବାନନ୍ଦ ଏହାର ନିଛକ ଉଦାହରଣ । ସୁତରାଂ ଲେମ୍ବ୍ରୋସୋଙ୍କ ମତବାଦକୁ ଏକ ବଳିଷ୍ଠ ପ୍ରମାଣ ଭାବେ ଗ୍ରହଣ କରା-ଯାଇ ନ ପାରେ । ଏପରିକି ଅପରାଧୀ ଶ୍ରେଣୀର ଆଭ୍ୟନ୍ତରୀଣ ଗଠନ ଭଲ ମଣିଷର ଆଭ୍ୟନ୍ତରୀଣ ଗଠନ ଠାରୁ ଭିନ୍ନ ନୁହେଁ । ମଣିଷ, ମଣିଷ ମଧ୍ୟରେ ପ୍ରଭେଦ ତ ସ୍ୱାଭାବିକ କଥା ।

ବିଶେଷତଃ ଅତି ପୁରାକାଳରୁ ଆଜି ପର୍ଯ୍ୟନ୍ତ ସମସାମୟିକ ସାମାଜିକ ଅବସ୍ଥାକୁ ଅସାମାଜିକ କାର୍ଯ୍ୟକଳାପର ଏକମାତ୍ର ଭିତ୍ତିଭୂମି ରୂପେ ବହୁ ମତରେ ଗ୍ରହଣ କରାଯାଇଅଛି । ସମାଜର ଦୁର୍ଣ୍ଣୀତି ଓ ଲୋଭ ଦେଖାଣିଆ ନିୟମ ଯୋଗାଇ ଆସିଛି ପ୍ରୋତ୍ସାହନ । ଯୁଗେ ଯୁଗେ ଗଢ଼ିଉଠିଛି ଦୁଇ ଶ୍ରେଣୀର ମଣିଷଙ୍କୁ ନେଇ ।

ସେମାନଙ୍କୁ ଉଚ୍ଚ ଓ ନୀଚ ଦୁଇଟି ଭାଗରେ ଭାଗ କରାଯାଇପାରେ । ଆଜି ଠିକ ଏଇ ଭଳି ଭାବରେ ତଥ୍ୟ କହେ ଉଚ୍ଚ ଶ୍ରେଣୀର ମଣିଷମାନେ ସବୁ ପ୍ରକାର ସାମାଜିକ ସୁବିଧା ସୁଯୋଗକୁ ନିଜସ୍ୱ କରିନେଇ ନୀଚ ଶ୍ରେଣୀର ଲୋକ-ମାନଙ୍କୁ ଅନ୍ଧକାର ବସ୍ତିଭଳି ଅନ୍ଧ ଗଳିକୁ ଠେଲିଦେଇ ଆସିଛନ୍ତି । ଖାଦ୍ୟ ବୁଢ଼ା, ଖଟୁଆ, ଶିଖ ମନାଇମାନେ ପେଟ ବଢ଼ାଇ ବୁଲୁଥିବା ବେଳେ ନିରୀହ ସରଳ ଲୋକମାନେ ପାଉଛନ୍ତି ଯନ୍ତ୍ରଣାର କୋରଡ଼ା । ସେତେ ଭଲକାମ କଲେ ମଧ୍ୟ ସମାଜ ସେମାନଙ୍କୁ ସ୍ୱୀକୃତି ଦେଉନାହିଁ । ବରଂ ଅଧିକ ନାକଟେକ ରଖୁଛି । ସ୍ୱୟଂ ସ୍ରଷ୍ଟା ସମାଜ ପତିମାନେ ନିର୍ମଳୀ କଥା ଭଳି ଏଇ ଉପେକ୍ଷିତ ମାନଙ୍କ ରକ୍ତଶୋଷି ବସ୍ତ୍ର ରଖିବାକୁ ନିଜର ପୈତୃକ ଅଧିକାର ଭାବେ ସମାଜ ଆଗରେ ଜାହିର କରି ଆସିଛନ୍ତି । କେତେଦିନ ମଣିଷ ଉପେକ୍ଷିତ ହୋଇ ରହିବ ଏଭଳି । ପ୍ରକୃତ ଅସାମାଜିକ ବ୍ୟକ୍ତିମାନଙ୍କ ଉପରେ ରାଗ ଶୁଝାଇବାକୁ ଯାଇ ସେ ଅବାଟକୁ ଚାଲିଆସେ । ଫଳରେ ହୁଏ ବନ୍ୟ ପଶୁଠାରୁ ଅଧିକ ହିଂସ୍ର । ଜଘନ୍ୟ । ପ୍ରକୃତରେ ଏଥିପାଇଁ କ'ଣ ଆମ ସମାଜ ଶତକଡ଼ା ଶହେଭାଗ ଦାୟୀ ନୁହେଁ ।

ଆଜି ଝିକଏ ବସ୍ତୁତ ଭାବରେ ଚତୁର କହେଲ ଦେଖାଯାଏ ଓ ଆଉ ସମସ୍ତ ଏକ ପ୍ରକାର ଅବମିତାର ସ୍ତରରେ ବାସ କରୁଅଛୁ । ଅପରାଧକୁ ଘୃଣା କରିବା ସ୍ଥଳେ ଅପରାଧୀକୁ ଘୃଣାକରି ଚାଲିଛୁ । ଏହା ଦିନକୁ ଦିନ ଅଧିକ ସଂଖ୍ୟକ ଅପରାଧୀ ତିଆରି କରୁଛି ଯିବା ସଂଖ୍ୟା କମାଉ ନାହିଁ । ସମସ୍ତେ ବୁଝିବା କଥା ଅନେକ କ୍ଷେତ୍ରରେ ଅପରାଧୀ ମଣିଷଟି ନିଜର ଅନିଚ୍ଛା ସତ୍ତ୍ୱେ ମଧ୍ୟ ଅପରାଧ କରିବ ସେ । ତେଣୁ ଉପଯୁକ୍ତ ଶିକ୍ଷା ଓ ଅନୁକୂଳ ପରିସ୍ଥିତିର ପ୍ରଭାବରେ ସେ ହଜାଇଲା ବାଟକୁ ଫେରିପାଇବା ଅସମ୍ଭବ ନୁହେଁ । ବଣ ଜଙ୍ଗଲର ହିଂସ୍ର ବାଘ ଭାଲୁ, ସିଂହକୁ ପଞ୍ଜରାରେ ରଖି ମଣିଷ ସର୍କସର ଖେଳ ଶିଖାଇ ଥାଏ । ଶୁଆ ସାରୀ ମଣିଷ ସ୍ୱର ଅନୁକରଣରେ ନର୍ତ୍ତନ ହରିନାମ ଗାଇ ପାରନ୍ତି । ଯଦି ବିବେକ ଶୂନ୍ୟ ଜୀବର ବ୍ୟବହାରରେ ଏତେ ପରିବର୍ତ୍ତନ ଆସିପାରେ ତେବେ ମଣିଷଟିଏ କାହିଁକି ଅବାଟରୁ ବାଟକୁ ଆସିବ ନାହିଁ ।

ଅପରନ୍ତୁ ଆମ ଦେଶର ଅର୍ଥନୈତିକ ବୈଷମ୍ୟ ଓ ଉପଯୁକ୍ତ ନୀତିଶିକ୍ଷାର ଘୋର ଅଭାବ ଏହାର ସ୍ରଷ୍ଟା କହିଲେ ବିଶେଷ ଭୁଲ ହେବ ନାହିଁ । ଈଶ୍ୱର ସୃଷ୍ଟିରେ ପ୍ରତ୍ୟେକ ମଣିଷ ସମାନ ହୋଇ ଜନ୍ମ ହୋଇଥାଏ । ହେଲେ କେତେଜଣ ସମାନ ଶିକ୍ଷା ଓ ସୁବିଧାର ଅଧିକାରୀ ହୁଅନ୍ତି । ପ୍ରାଥମିକ ଆବଶ୍ୟ-କତା ମୁଠାଏ ଦାନା ଓ ଖଣ୍ଡିଏ କନା କେତେକଙ୍କ ଭାଗ୍ୟରେ ଜୁଟେନାହିଁ । ସେଇମାନେ ଆଉ କି ସୁଖ ସ୍ୱପ୍ନ ଦେଖିବେ । ବାଧ୍ୟ ହୋଇ ଅବାଟକୁ ଗୋଡ଼ ଖସିଯାଏ । ଶିକ୍ଷାକୁ କୁଶିକ୍ଷା ଭଳି ବ୍ୟବହାର କରି ମଣିଷ ଅନ୍ୟର ସମ୍ମାନ ରଖେ ନାହିଁ । ଆଜି ସମାଜରେ ଆଦରଣୀୟ ଧଳା ହାତୀମାନେ କାଳପାଣି ଓ ନୀଳପାନ ହିଁ ନେଇ ଖେଳିବାରେ ବ୍ୟସ୍ତ । ତାହାର ହିସାବ କିଏ ରଖୁଛି ।

ସର୍ବଶେଷରେ ଆଜିର ବୃତ୍ତିଗତ ସମସ୍ୟା ହିଁ ଏକ ମୁଖ୍ୟ କାରଣ ରୂପେ ଦେଖା ଦେଇଛି । ଜନ୍ମଗତ ଭାବେ କେତେ ଲୋକଙ୍କୁ ଅଯଥା ସୁବିଧା ଦେଇ ଯୋଗ୍ୟ ବ୍ୟକ୍ତିକୁ ଅଯୋଗ୍ୟ ପ୍ରମାଣ କରାଇବାରେ ଆଜିର ସମାଜ ସିଦ୍ଧହସ୍ତ ।

ବାସ୍ତବିକ୍ ଏଇସବୁର କ'ଣ ଇତି ନାହିଁ ? ଏମାନଙ୍କୁ ନେଇ ଏକ ପୂର୍ଣ୍ଣଚ୍ଛେଦ କ'ଣ ଟଣାଯାଇ ପାରେନା ? କିନ୍ତୁ ବିଶ୍ୱ ବିଜୟୀ ନେପୋଲିୟନଙ୍କ ଭାଷାରେ ନ ପାରିବାଟା ମୂର୍ଖମାନଙ୍କର ଭୂଷଣ । ସୁତରାଂ ଦରକାର ପ୍ରଚେଷ୍ଟା । ଏହା ଖୁବ୍ ସହଜ ।

ପ୍ରଥମତଃ ପିଲାମାନଙ୍କୁ ତା' ଉପରେ ବାପ ମାଆଙ୍କ ପ୍ରଭାବ ଅଜ୍ଞାତସାରେ ପଡ଼ିଥାଏ । ଏହା ପିଲାର ଭବିଷ୍ୟତ ନିର୍ଦ୍ଧାରଣ କରିବାରେ ସହଯୋଗୀ କାର୍ଯ୍ୟକ ପଥ ପ୍ରଦର୍ଶକ କହିଲେ ଭୁଲ ହେବ ନାହିଁ । କୁମ୍ଭାର ଚକରେ ମାଟି ମେଞ୍ଚା ମେଞ୍ଚା ଥୋଇ ସୁନ୍ଦର ସୁନ୍ଦର ପାତ୍ର ତିଆରିଏ । କିନ୍ତୁ କିଛିଟା ଅସାବଧାନ ହେଲେ ବା ମାଟି ପିଣ୍ଡୁଳାରେ ଟିକିଏ ଗୋଡ଼ିଟିଏ ରହିଗଲେ ତିଆରିଥିବା ପାତ୍ରଟି ସମ୍ପୂର୍ଣ୍ଣ ରୂପେ ଅଦରକାରୀ ହୋଇଯାଏ । ସୁତରାଂ ପ୍ରତ୍ୟେକ ବାପ ମାଆ କୁମ୍ଭାର ପରି ନିଜ ନିଜର ମାଟି ପିଣ୍ଡୁଳାକୁ ଭଲ ଭାବେ ଗୋଡ଼ି ବାଲି ବାଛି-ନେଇ ଯତ୍ନ ସହକାରେ ପାତ୍ରଟିଏ ଗଢ଼ିଲେ ତାହା ହେବ ସରସ ସୁନ୍ଦର । ସେହିଭଳି ନିଜ ପିଲାକୁ କୁସଙ୍ଗରୁ ଦୂରରେ ରଖିଲେ ସେ ମଣିଷ ଭଳି ମଣିଷଟିଏ ହୋଇପାରେ । କାରଣ "ପରିବାର ହିଁ ଶିଶୁର ପ୍ରଥମ ବିଦ୍ୟାଳୟ ।"

ଅଧିକନ୍ତୁ ଅପରାଧୀ ଜୀବନ ଜନ୍ମରେ ଗଢ଼ିଉଠେ ନାହିଁ । ଏ ପ୍ରକାର କାର୍ଯ୍ୟକ୍ରମରେ ଆଶ୍ରୟ ପାଇବା ମାତ୍ରେ କଠୋର ଭାବେ ଦମନ କରାଗଲେ ତାହାର ବିକାଶ ହେବା ଅସମ୍ଭବ ।

ଶିଶୁର ମନ ଉପରେ ଗପ ଓ କାହାଣୀର ପ୍ରଭାବ ସୁଦୂର ପ୍ରସାରୀ । ପିଲାମାନଙ୍କୁ ସେମାନଙ୍କ ବଡ଼ ମଣିଷଙ୍କ ପିଲାଦିନ, ରାମାୟଣ, ମହାଭାରତର ଉତ୍ତମ ଚରିତ୍ରଙ୍କ ବିଷୟରେ ବୁଝାଇ ଦିଆଗଲେ ସୁନିଶ୍ଚିତ ଭାବେ ଭବିଷ୍ୟ-ତରେ ଶିଶୁ ନିର୍ବିବାଦେ ଜୀବନଯାପନ କରିବ ।

ଏ ଦିଗକୁ ବାଦ୍ ଦେଲେ, ଦେଶର ବୃହତ୍ତମ ସ୍ୱାର୍ଥଦୃଷ୍ଟିରୁ ସରକାରୀ କଳ ଆଇନ ଶୃଙ୍ଖଳାର ଉପଯୁକ୍ତ ପ୍ରୟୋଗ କରିବା ଉଚିତ ।

ଅପରାଧୀ ଯେତେ ହିଂସ୍ର ହେଉ ଓ ଅପରାଧ ଯେତେ ପୁରାତନ ହେଉ ଉପଯୁକ୍ତ ଅର୍ଗଳ ମଧ୍ୟରେ ଥରେ ପଡ଼ିଲେ ସେ ରୁହଁ ରୁହଁ ବାଟକୁ ଆସିବ ।

ଉପରୋକ୍ତ ଆଲୋଚନାରୁ ଏତିକି ସାରକଥା ହେଲା ଯେ,

"ଆପଣା ହସ୍ତେ ଜହ୍ନା ଛେଦ ।
କେ' ତାର ଅଛି ପ୍ରତିବାଦ ।"

